# ଶି ଶୁ ପ୍ର ଭା

## ଦ୍ୱି-ମାସିକ ଶିଶୁ ପତ୍ରିକା

ରେ. ନଂ. ୩୪୨୯୭ / ୮୦ ୧୯୯୪ ପ୍ରଥମ ସଂଖ୍ୟା

ପ୍ରତିଷ୍ଠାତା ଓ ମୁଖ୍ୟ ସମ୍ପାଦକ

**ଅର୍ଜୁନ ନାଲ୍ଲା**

( ରାଜ୍ୟ ପୁରସ୍କାର ପ୍ରାପ୍ତ ଶିକ୍ଷକ )

ସମ୍ପାଦକ

**ବସନ୍ତ ପ୍ରସାଦ ନାଲ୍ଲା**

ବାଲିମେଲା

**ସୀମାଞ୍ଚଳ ପଣ୍ଡା**

ମାଲକାନଗିରି

ଯୋଗାଯୋଗ

ସମ୍ପାଦକ:—**ଶିଶୁପ୍ରଭା କାର୍ଯ୍ୟାଳୟ**

ମାଲକାନଗିରି ୭୬୪୦୪୫

ବାଲିମେଲା—୭୬୪୦୫୧

ମୂଲ୍ୟ—୩-୦୦

## ଏହି ସଂଖ୍ୟାରେ........

# ସଂପାଦକୀୟ........

ନବ ବର୍ଷରେ ଆନ୍ତରିକ ଅଭିନନ୍ଦନ ନମସ୍ତେକୁ ।

୧୯୮୦ ମସିହାରେ ଶିଶୁପ୍ରଭାର ଜନ୍ମ । କୁଆଁ କୁଆଁ ଡାକ ଦେଇ ଉଠି ପଡ଼ି ବହୁ ସଗ୍ରାମ କରି ଓଡ଼ିଶାର ଅଗଣିତ ପାଠକ ପାଠିକାଙ୍କ ପାଖରେ ପହଞ୍ଚି ବାକୁ ଚେଷ୍ଟା କରିଛି । କାଳର କରାଳରେ ପଡି ଏଥି ମଧ୍ୟରେ ଏକ ବର୍ଷ ଧରି ଆତ୍ମଗୋପନ କରି ପୁଣି ଆଜିର ନବବର୍ଷ ଜନରାଜ୍ୟ ଦିବସରେ ଜନସମୂହରେ ଉପସ୍ଥିତ ହେଉଛି ।

ଏହି ଶିଶୁପ୍ରଭା ଆପଣମାନଙ୍କର ଶିଶୁ । ତା'ର ଦୋଷା ଦୋଷ କ୍ଷମାକରି ଆପଣମାନେ ତାକୁ ଆଦରରେ ହାତରେ ଓ କୋଳରେ ଧରିବାକୁ ଅନୁରୋଧ ।

ଆଜିର ପବିତ୍ର ଜନରାଜ୍ୟ ଦିବସରେ ମୋର ଅନୁରୋଧ, ଆପଣମାନେ ଜଣେ ଓଡ଼ିଆ ଭାବେ ଓଡ଼ିଆ ପତ୍ର ପତ୍ରିକା ପାଠ କରନ୍ତୁ । ନିଜର ପିଲାମାନଙ୍କୁ ପଢ଼ିବାକୁ ସୁଯୋଗ ଦିଅନ୍ତୁ । ଉତ୍ସବ ସମୟରେ ଓଡ଼ିଆ ପୁସ୍ତକ ଉପହାର ଦିଅନ୍ତୁ । ନିଜର ଭାଷା ଓ ସଂସ୍କୃତିର ଉନ୍ନତି ନିମନ୍ତେ ସାହାଯ୍ୟ କରନ୍ତୁ ।

ଆଜି ଦେଶର ବହୁ ନିରକ୍ଷର ଶିଶୁ, ଶ୍ରମିକ ଭାବେ ବିଭିନ୍ନ ହୋଟେଲ ଓ ଶିଳ୍ପ ଅନୁଷ୍ଠାନରେ ଗଣ୍ଡେ ପେଟପୂରା ଖାଇବା ପାଇଁ ଦିନ ରାତି ପରିଶ୍ରମ କରୁଛନ୍ତି । ଆସନ୍ତୁ ଆଜିର ଜନ ରାଜ୍ୟ ଦିବସରେ ଆମେ ଶପଥ ନେବା, ଏହି ଅବହେଳିତ ଶିଶୁମାନଙ୍କ ମୁହଁରେ ହସ ଫୁଟାଇ ସେମାନଙ୍କୁ ସାକ୍ଷର କରାଇବା ।

ଧନ୍ୟବାଦ ସହ

ବିଷ୍ଣୁ ପ୍ରସାଦ ମାଲ୍ଲା

**ସଂପାଦକ**



**ଓଡ଼ିଶା ସରକାର**


**ଶ୍ରୀ ଗଗନ କୁମାର ଧଳ, ଆଇ: ଏ: ଏସ୍:**
କଲେକ୍ଟର ଓ ଅଧ୍ୟକ୍ଷ, ଜିଲ୍ଲା ସାକ୍ଷରତା ସମିତି
ମୁଖ୍ୟ ସମ୍ପାଦକ-ଅଭିଯାନ
ମାଲକାନଗିରି-୭୬୪୦୪୮
ଦୂରଭାଷ:—୨୩୨


# ବାର୍ତ୍ତା

ପ୍ରିୟ ସମ୍ପାଦକ,

ଆପଣଙ୍କ ସମ୍ପାଦନାରେ ଓଡ଼ିଶାର ପ୍ରାନ୍ତ ମାଲକାନଗିରିରୁ ଶିଶୁମାନଙ୍କ ପାଇଁ "ଶିଶୁପ୍ରଭା" ପ୍ରକାଶ ପାଉଥିବା ଏକ ଆନନ୍ଦର ବିଷୟ ।

ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଯେଉଁ କେତୋଟି ଶିଶୁ ପତ୍ରିକା ପ୍ରକାଶ ପାଉଛି ତାହା ପ୍ରାୟ ନିୟମିତ ପ୍ରକାଶ ପାଇ ପାରୁନାହିଁ । କାରଣ ଆମର ଓଡ଼ିଶାରେ ଶିଶୁ ପତ୍ରିକା ପାଠକଙ୍କ ସଂଖ୍ୟାକମ୍ । ଶ୍ରେଷ୍ଠଶ୍ରେଷ୍ଠ ଶିଶୁମାନଙ୍କୁ ଉତ୍ସାହିତ, ପ୍ରତିଯୋଗିତା ମୂଳକ ମନୋଭାବ ସୃଷ୍ଟି କରିବା ପାଇଁ ହେଲେ ସେମାନଙ୍କୁ ଶିଶୁ ପତ୍ରିକା ପଢ଼ିବାର ସୁଯୋଗ ଦେବା ଆବଶ୍ୟକ ।

ଏହି ମାଲକାନଗିରି ଜିଲ୍ଲାରେ ଅଧିକାଂଶ ଶିଶୁ ଶିକ୍ଷାଠାରୁ ଦୂରରେ ରହିଛନ୍ତି । ଜନ ସାଧାରଣ ସେମାନଙ୍କ ଅଭିଭାବକଙ୍କ ମନରେ ଶିକ୍ଷାର ଆବଶ୍ୟକ ସମ୍ପର୍କରେ ବୁଝାଇ ପାରିଲେ, ଶିଶୁମାନେ ନୂତନ ଆଲୋକର ସନ୍ଧାନ ପାଇ ସୁନ୍ଦର ଭବିଷ୍ୟତ ଗଢ଼ି ପାରିବେ ।

ଜନଗଣ୍ୟ ଦିବସ ଉପଲକ୍ଷେ "ଶିଶୁପ୍ରଭା"ର ଉନ୍ମୋଚନ ଅବସରରେ ଆଜିର ଶିଶୁ ଯେପରି ଭବିଷ୍ୟତରେ ସୁ-ନାଗରିକ ହୋଇ ଦେଶ ଓ ଜାତିର ଉନ୍ନତି ପାଇଁ ଆଗେଇ ଆସିବ, ଏହାହିଁ ମୋର କାମନା ।

**ଗଗନ କୁମାର ଧଳ**

# ବୁଲୁ ମୋର ନାମ

**ମର୍କତ କେଶରୀ ରାୟ**

ନିଷ୍କପଟ ବାଳକ ମୁହିଁ ବୁଲୁ ମୋର ନାମ,
ଦିନରେ ମୁଁ ସ୍କୁଲ୍ ଯାଏ, ପାଠ ପଢା ମୋ କାମ ।
ସ୍କୁଲ୍‌ରୁ ଆସି ସ୍ବରଣ୍ଠା ବେଳେ ମାଡପାଏ ଯେ ମୁଁ ଖେଳେ,
ସନ୍ଧ୍ୟା ହେଲେ ପ୍ରାର୍ଥନାପାଶ ବସି ଯାଏ ମୁଁ ଖାତା ବନ୍ଧୁମେଳେ
ଛଳ କପଟ ବାଛ ବିଚାର ନାହିଁ ମୋର କିଛି ନାହିଁ,
ହିଂସା, ଦ୍ୱେଷ, ଭୟଭ୍ରାନ୍ତି ନାହିଁ ମୋର କିଛି ନାହିଁ ।
ଲୁଲୁ, ରହିମ୍ ମ୍ୟାଗି, ଲୁନା ସଭିଏଁ ଆମେ ଏକାଠି ଖେଳୁ,
କଳି ଲାଗିଲେ ଜ୍ୟାକସନ ଅଙ୍କଲ ସାଙ୍ଗରେ ଯାଇ ବୁଲୁ ।
ମିଛ ମୁହିଁ କହେନାହିଁ କେବେଜମା ଗାଳି କରେ
ଲୋଭ ମୁହିଁ କରେନାହିଁ ମା ଗାଳିକରେ ।
ସମସ୍ତେ ମତେ ପାଆନ୍ତି ଭଲ ବୁଲୁ ମୋର ନାମ,
ବଡ଼ହୋଇ ମୁଁ ନାଁ ରଖିବି କରି ଭଲ କାମ ।



ଜିଲ୍ଲା ଶିକ୍ଷାଧିକାରୀ
ମାଲକାନଗିରି-୨

# ବେଙ୍ଗରାଜା

ଅନ୍ନପୂର୍ଣ୍ଣା ମିଶ୍ର
ପୂର୍ବାଞ୍ଚଳ ଭାଷାକେନ୍ଦ୍ର

ବେଙ୍ଗ ରାଜା ଆଜ ସାର ବେଶ ସାଜ
ଧାଇଁ ଆସେ ହୋଇ ତରତର
ବେଙ୍ଗ ରାଣୀ ଆମ ମନ ଖୁସି ଭରି
ଡୁଲ ଡୁଲ ହଏ ବାର ବାର ॥୧॥
ପାଇକ ପାଚର ମନ୍ତ୍ରୀ ବଗ୍ରବର
ଆସୁଛନ୍ତି ବେଗ ବେଗ ହୋଇ
ରାଜ୍ୟ ଜୟକରି ଫେରୁଛନ୍ତି ରାଜା
ରାଣୀ ଯାଉଛନ୍ତି ବେଗେ ଧାଇଁ ॥୨॥
ରାଇଜ ସାକର ପରଜା ଆନନ୍ଦେ
ନାଚୁଛନ୍ତି ହୋଇ ଥେଇ ଥେଇ
ଶୁଭ ଶଙ୍ଖ କେବେ ବଜାଇ ଦେଉଛି
ଭଣ୍ଡାର ବେଙ୍ଗଟା ରହି ରହି ॥୩॥
ଯାତରା ମେଲଣ ଆଖଡ଼ା ସଙ୍ଗୀତ
ଚାଲିଅଛି ସବୁ କେତେ ଲୀଳା,
କେଉଁଠି ଚାଲିଛି ଦାସକାଠିଆ ତ
ଚାଲେ କେଉଁଠି ଲଢେଇ ପାଲା ॥୪॥
କେତେ ଭୋଜ ଭାତ ମଉଛବ ଆଜ
ପୁଣି ବଜାସ୍ତୁ ନଣାଣ ବାଜେ,
ଭେରୀ ତୁରୀ ନାଦେ କାନ ଫାଟିଯାଏ
ଆମ ରାଜା ତ ହୋଇଲେଣି ରାଜ ॥୫॥

ଭୁବନେଶ୍ୱର

# ପରିଚୟ

ଉମାକାନ୍ତ ଦାଶ

ଲିଲି କେବେ ମାଆଙ୍କୁ ଏମିତି ଏତେ ଖୁସି ହୋଇଯିବା ଦେଖି ନ ଥିଲା । ଚାକିରୀ କଲାପରେ ପ୍ରଥମ ମାସର ଦରମାଟି ଆଣି ମାଆଙ୍କ ହାତକୁ ଆଜି ବଢ଼ାଇଦେଲା । ଟଙ୍କାତକ ହାତରେ ଧରି ପକେଇ ମାଆ ତାକୁ କିଛିକ୍ଷଣ ଅନେଇ ରହିଲେ । ତା'ପରେ ତାକୁ ଖୁବ୍ ଜୋରରେ କୁଣ୍ଢେଇ ଧରି ବାରମ୍ବାର ତା'ର କପାଳରେ ଚୁମ୍ବନ ଦେବାକୁ ଲାଗିଲେ । ଆଖିରୁ ଝର ଝର ବହି ଯାଉଥିଲା ଲୁହ । ଆନନ୍ଦର ଲୁହ । ସେଇ ଲୁହ ଦେଖି ଅଜାଡ଼ି ହୋଇ ପଡୁଥିଲା । ଅଜସ୍ର ଆଶୀର୍ବାଦ । ମାଆଙ୍କର ମୁହଁରେ ଏମିତି ପ୍ରଫୁଲ୍ଲତା । ଲିଲି କେବେ ଦେଖି ନ ଥିଲା । କେଡ଼େ ସୁନ୍ଦର ଦେଖା ଯାଉଥିଲା ସେ ମୁହଁ । ତା'ର ମନେ ହେଉଥିଲା ମୁହଁଟା ସବୁବେଳେ ଏମିତି ସତେଜ ହୋଇ ରହନ୍ତା କି ! ଏଡ଼େ ମଳିନ ମୁହଁଟାରେ ଏତେ ଆଲୁଅ ଆଜଯାଏ କେଉଁଠି ଛପି ରହିଥିଲା ? ଲିଲି ମନେ ମନେ ପଣ କରୁଥିଲା ସେହି ମୁହଁର ଜ୍ୟୋତିକୁ ସେ ଆଉ କେବେ ହେଲେ ହଜାଇବାକୁ ଦେବନି ।

ପଢ଼ିବ ବୋଲି ବହି ଖଣ୍ଡେ ଧରି ଲିଲି ବସିଥିଲା । ଘରେ ତ କିଛି କାମ ନ ଥିଲା । ମାଆଙ୍କୁ ରୋଷେଇରେ ଟିକିଏ ସାହାଯ୍ୟ କରିବ ବୋଲି ଭାବୁଥିଲା । ମାତ୍ର ମାଆ ତ ତାକୁ ରୋଷେଇ ଘରେ ପଶିବାକୁ ହିଁ ଦେଉ ନାହାନ୍ତି । ଦୁଇଟା ଲୋକଙ୍କ ପାଇଁ ରୋଷେଇ । କେତେ ବଡ଼ କାମଟାଏ ବା ! ତାଙ୍କୁ ବଳେଇ ପଡ଼ିବ । ମଫସଲ ଜାଗା । ଗଲା ଦଶବରଷ କାଳ ପ୍ରାୟ ସହରରେ କଟିଗଲା ଲିଲିର । ସହରର ହଷ୍ଟେଲରେ ରହି କଲେଜ ପାଠ ଆଉ ଡାକ୍ତରୀ ପାଠ ପଢ଼ୁଥିଲା ସିନା ଅତି ସାଧାସିଧା ଚଳୁଥିଲା ଲିଲି । ଭଲ ପଢ଼ୁଥିଲା ଏବଂ ତା' ସାଙ୍ଗକୁ

ଝଣ ହେ୍ନାଂଶଳା ଥିଲା । ସେଇଥିପାଇଁ ତାକୁ ସମସ୍ତେ ଆଦର କରୁଥିଲେ । କେବେ କେବେ ତାକୁ ପରିହାସ କରିବା ସେ ଜାଣି ନ ଥିଲା । ନିଜର ବ୍ୟବହାର ନେଇ ମଣିଷ ବ୍ୟବହାର ପାଇଥାଏ । ଅନ୍ୟକୁ ସ୍ନେହ କରି ଅନ୍ୟଠୁ ସ୍ନେହ ପାଇଥାଏ । ଏଇତ ମଣିଷ ପଣିଆ । ଇଏ ଆମର ସମାଜର ଚଳଣି ।

ଏବେ ମାସେ ହେଲା ଲିଲି ମଫସଲ ଡ଼ାକ୍ତରଖାନାରେ ନୂଆ ଡ଼ାକ୍ତରଣୀ । ଅଳ୍ପଦିନରେ ସେ ଲୋକଙ୍କର ଆପଣାର ହୋଇପାରିଛି । ଲୋକଙ୍କ ସେବାରେ ମନ ଦେଇଛି । ଲୋକଙ୍କ ମୁହଁରେ ହସ ଉକୁଟାଇ ଆପେ ଆନନ୍ଦ ପାଇଛି ।

ଲିଲିର ମନେ ପଡ଼ି ଯାଇଥିଲା ସେଇଦିନ ଗୁଡ଼ିକ । ମାଆ ଆଉ ସେ ଗାଁରେ ରହୁଥିଲେ । ତାଙ୍କର ଗୋଟିଏ ଟିଣ ଛପର ଘରଟିରେ । ବରଷା ହେଲେ ଟପର ଟପର ଶବ୍ଦ କରି ଟୋପା ଟୋପା ପାଣି ପଡ଼ୁଥିଲା । ତାକୁ ଭାରି ଡର ମାଡ଼ୁଥିଲା । ମାଆକୁ ଜାବୁଡ଼ି ଧରି ଶୋଉଥିଲା ଲିଲି । ଗାଆଁ ସ୍କୁଲରେ ସେ ପଢ଼ୁଥିଲା । ଝିଅ ପିଲାଟିଏ ପାଠ ପଢ଼ି କ'ଣ କରିବ ବୋଲି ଅନେକେ ତା' ମାଆକୁ କହୁଛନ୍ତି । ତା'ର ଭାଇ ଭଉଣୀତ କେହି ନ ଥାନ୍ତି । ସେ ଗୋଟିଏ । ମାଆ ଖାଲି ଟିକିଏ ହସି ଦିଅନ୍ତି ସିନା କାହାକୁ କିଛି କୁହନ୍ତି ନାହିଁ । ଲିଲି ବି ଅନେକ ସମୟରେ ଭାବିଛି ପାଠ ପଢ଼ିବାରେ ତା'ର ଅସୁବିଧା କ'ଣ ? ସେ କାହିଁକି ପାଠ ପଢ଼ି ପାରିବ ନାହିଁ ? ଝିଅ ହେଲା ବୋଲି କ'ଣ ପାଠ ପଢ଼ିବା ମନା ? ତା' ଶ୍ରେଣୀରେ କେତେ ପୁଅ ପଢ଼ୁଛନ୍ତି । କେହିତ ତା' ପରି ପ୍ରତି ବର୍ଷ ଶ୍ରେଣୀରେ ପ୍ରଥମ ହେଉ ନାହାନ୍ତି ?

ଦିନକର କଥା । ଦିନେଇ ସାର୍ ଶ୍ରେଣୀରେ କେତେ ଗୁଡ଼ିଏ ପ୍ରଶ୍ନ ପଚାରିଲେ । ପ୍ରତ୍ୟେକ ପ୍ରଶ୍ନର ନିର୍ଭୁଲ ଉତ୍ତର ଦେଇଥିଲେ ଲିଲି । ସେଦିନ

ସାଧୁ ତା' ଉପରେ ଖୁବ୍ ଖୁସି ହୋଇଗଲେ । କହିଲେ, "ମାଆ, ତୁ ଭଲ ପଢ଼ୁଛୁ । ତୋ ବାପା କିଏ ? ତାଙ୍କୁ ମୁଁ ଥରେ ସାକ୍ଷାତ କରନ୍ତି ।" ଏତିକିରେ ଲିଲିର ଆଖିରୁ ଧାର ଧାର ଲୁହ ଝରି ପଡୁଥିଲା । ସେ କିଛି କହି ପାରି ନ ଥିଲା । ସାର୍ ବୁଝି ପାରିଥିଲେ । ସେଇଥି ପାଇଁ ଦିନେ ଅପରାହ୍ନ ସଞ୍ଜ-ବେଳେ 'ଲିଲି, ଲିଲି' ଡାକ ସାର୍ ତାଙ୍କ ଘରେ ପହଞ୍ଚି ଗଲେ । ଲିଲି ସେତେବେଳକୁ ଦଉଡ଼ିଆ ଖଟିଆଟିଏ ଉପରେ ବହି ପତ୍ର ମେଲିଦେଇ ପଢା ଆରମ୍ଭ କରି ଦେଇଥାଏ । ସାର୍ଙ୍କୁ ହଠାତ୍ ଘରେ ଦେଖି ଲିଲି ଗୁନଆଁ ହୋଇ ପଡ଼ିଥିଲା । ନମସ୍କାର କରି ସାର୍ଙ୍କୁ ବସିବାକୁ କହିଥିଲା । ସାର୍ ମାଆଙ୍କୁ ଦେଖା କରିବାକୁ ଚାହିଁଥିଲେ । ଲିଲି ମାଆଙ୍କୁ ଡାକିଥିଲା । ମାଆ ସେତେବେଳେ ଖୁବ୍ ଆତଙ୍କିତ ହେଲେ ଭଳି ଆସି ପ୍ରଣାମ ଜଣାଇ ଠିଆ ହୋଇଥିଲେ । ସାର୍ କହିଥିଲେ, " ଲିଲିର ମାଆ, ମୁଁ ଆପଣଙ୍କ ନା ଜାଣିନି । ମୋ ପାଇଁ ଆପଣ ଲିଲିର ମାଆ । ଲିଲି ଭଳି ଝିଅକୁ ଜନ୍ମଦେଇ ଆପଣେ ଧନ୍ୟ । କେତେ ଭଲ ଝିଅଟିଏ । ତା' ଭଳି ପଢ଼ିବା ପିଲା ନାହାନ୍ତି ସ୍କୁଲରେ । ଏ ଝିଅ ଆପଣଙ୍କ ନାଆଁ ରଖିବ । ମୁଁ ସବୁ ବୁଝି ପାରୁଛି । ମୁଁ ଅନୁମାନ କରିପାରୁଛି ଲିଲିକୁ ପଢ଼ାଇବାକୁ ଯାଇ ଆପଣ ବାରି ଲୋକଙ୍କଠୁ ଅପବାଦ ଶୁଣୁଥିବେ । ଆପଣ କାହାର କଥାକୁ କାନ ନ ଦେଇ ଏ ଯାଏଁ ଚାହିଁ ଛନ୍ତି । ଆଜି କହୁଛି ଦିନ ଗଲେ ଏଇ ଲିଲି ଆପଣଙ୍କ ପାଇଁ ସମ୍ମାନ ଆଣିଦେବ । ସିଏ ହେବ ଆପଣଙ୍କର ପରିଚୟ । ଆପଣ ଧୈର୍ଯ୍ୟର ସହିତ ସେହି ଦିନକୁ ଅପେକ୍ଷା କରିବାକୁ ହେବ ।" ମାଆ ସାର୍ଙ୍କର ଏଇ କେତେ ପଦ କଥାକୁ ମୁଣ୍ଡ ପାତି ମାନି ନେଇଥିଲେ । ସେଇ କେତେ ପଦ କଥା ଏବେ ବି ଲିଲିର କାନରେ ଗୁଞ୍ଜରି ଉଠୁଛି । " ସିଏ ହେବ ଆପଣଙ୍କର ପରିଚୟ ।" ଏଇତକ ତା'ମାଆଙ୍କ ମନରେ ସେଇଦିନଠୁ ଧୈର୍ଯ୍ୟଭରି ଦେଇଥିଲା । ଲିଲିକୁ ମଧ୍ୟ ଆଗେଇ ଯିବାରେ ସାହାଯ୍ୟ କରିଥିଲା ।

ଲିଲି ସେଦିନ ପ୍ରଥମଶ୍ରେଣୀରେ ମାଟ୍ରିକ୍ ପାଶ୍ କଲା ସେଦିନ ଦଳେଇ ସାର୍ ପ୍ରଥମେ ଆସି ଖବର କହିଥିଲେ । ସେ ଦିନ ମାଆର ଆନନ୍ଦ ଆଜି ଦେଖେ କିଏ ? ସାର୍ ସେଦିନ ମାଆଙ୍କୁ ପଚାରିଥିଲେ, "କ'ଣ, ଲିଲିକି ପଢାଉଛନ୍ତି ତ ? " ମାଆ କହିଥିଲେ, "ନାହିଁ ଆଜ୍ଞା, ଏବେ ଏଇଠିକି ପାଇଁ କେତେ କ'ଣ ହୋଇ ଗଲାଣି । ଯାଇ ପଢ଼ଣାରେ ରହିଲେ ଦେଉ ନାହାନ୍ତି । ଝିଅକୁ ମୋର 'ଅଣ୍ଡିରା ଚଣ୍ଡୀ' କହୁଛନ୍ତି । ମଣିଷ କାନ କେତେ ଶୁଣିବ ? ସେତିକି ଥାଉ ଆଜ୍ଞା, " ସାର କିନ୍ତୁ ସେଦିନ ଟିକିଏ ଚଡା ଗଳାରେ ପଚାରିଥିଲେ, "ସେମାନେ ଲିଲିର କିଏ ? ଆପଣ ଲିଲିର ମାଆ, ତାର ବାପା ନାହିଁ ବୋଲି କିଏ ସିଏ ଏଇଠି ଅଟକି ଯିବ ? ମୁଁ ଏଡ୍ମିଟ୍ କରାଇ ଦେବି, " କିଏ ଜାଣେ ଆଉ କହୁଥାନ୍ତେ କେଜାଣି ହଠାତ୍ ଗଳାକୁ ନରମ କରିଦେଲେ । କହିଲେ, "ଲିଲିର ମାଆ, ଲିଲିର ଭବିଷ୍ୟତ ଉପରେ ମୋର ବି ତ କିଛି ଅଧିକାର ଅଛି । ସେ ଅଧିକାରରୁ ମୋତେ ଆପଣ ବଞ୍ଚିତ କରିବେ ? "

ସେଇ ଦିନୁ ଲିଲିର କଲେଜ ପଢା ପାଇଁ ଆୟୋଜନ ଆରମ୍ଭ ହୋଇ ଗଲା । ଲିଲି ଦୁଇ ବର୍ଷ କଲେଜରେ ପଢ଼ିଥିଲା । ପୁଣି ପ୍ରଥମ ଶ୍ରେଣୀ ପାଶ୍ କରି ମେଡ଼ିକାଲ୍ ଏଣ୍ଟ୍ରାନ୍ସ ଦେଇଥିଲା । ଡାକ୍ତରି ପାଠ ପଢ଼ିବା ପାଇଁ ତାର୍ ଘୋର ଇଚ୍ଛା ଥିଲା । ଦିନେ କଥା ପ୍ରସଙ୍ଗରେ ସେ ଦଳେଇ ସାର୍‌ଙ୍କୁ ଏଇ କଥା କହିଥିଲା । ସାର୍ କହିଲେ, "ମାଆ, ତୋ ଇଚ୍ଛା ପୂରଣ ହେବ । ତୁ ଲକ୍ଷ ପଥରେ ଆଗେଇ ଚାଲ । "

ଜମିବାଡ଼ି କିଛି ବିକା ଭଙ୍ଗା ହୋଇଥିଲା ସିନା, ଲିଲିର ଡାକ୍ତରି ପଢା ସରିଥିଲା । ସେତିକି ବେଳକୁ ଦଳେଇ ସାର୍ ଆଉ ନ ଥିଲେ ସତ, ତାଙ୍କ ପ୍ରେରଣା, ତାଙ୍କ ସଦିଚ୍ଛା, ତାଙ୍କ ଆଶୀର୍ବାଦ ଲିଲିକୁ ସବୁବେଳେ ବାଟ ଦେଖାଉଥିଲା ।

ଲିଲିର ଆଖି ଜକେଇ ଆସିଲା । ଡାକ୍ତରୀ ପଢୁଥିଲାବେଳେ ଯେଉଁଦିନ ସେ ଦିନେଇ ସାର୍‌ଙ୍କ ମୃତ୍ୟୁ ଖବର ପାଇଲା ସେ କିଛି ସମୟ ଭାଙ୍ଗି ପଡ଼ିଥିଲା । ବାପାଙ୍କ ମୃତ୍ୟୁକଥା ସେ ମାଆଙ୍କଠୁ ଶୁଣିଥିଲା ସିନା ତା'ର ସେ ଅନୁଭୂତି ନ ଥିଲା । ମୁଣ୍ଡଧୋଇ ସେ ଗାଧୋଇଥିଲା । ସେଦିନ ସେ ପୁଣି ଆପଣାକୁ ବଳ ଦେଇ କହିଥିଲା । ଦିନେଇ ସାର୍ ମରି ନାହାନ୍ତି । ତା'ର ସ୍ମୃତିରେ ରହି ସେ ତାକୁ ପ୍ରେରଣା ଦେଉଛନ୍ତି । ତାଙ୍କ ନିର୍ଦ୍ଦେଶକୁ ସେ ଅକ୍ଷରେ ଅକ୍ଷରେ ପାଳନ କରିବ । ମାଆଙ୍କ ନାଆଁ ରଖିବ ।

ଦିନେଇ ସାର ତା'ର ସ୍ମୃତିରେ ରହିଛନ୍ତି । ତାଙ୍କର ଆଶୀର୍ବାଦ ସେ ପାଇଛି । ସେ ମଣିଷ ହୋଇଛି । ଆଜି ସିଏ ଡାକ୍ତର ଲିଲି ମହାପାତ୍ର । ଆଉ ତା' ମାଆ ଡାକ୍ତର ଲିଲି ମହାପାତ୍ରଙ୍କ ମାଆ । ଏବେ ଛାଇ ପରି ପାଖେ ପାଖେ ଅଛନ୍ତି ମାଆ ।

ଏତିକିବେଳେ କିଏ ଜଣେ ବାହାରେ ଡାକିଲା, "ଡାକ୍ତର ଅଛନ୍ତି ?" ମାଆ ଯାଇ କବାଟ ଖୋଲିଲେ । କୌଣସି ରୋଗୀର ଲୋକ ବୋଧହୁଏ ଡାକୁଥିବେ । ଆଖି ପୋଛୁ ପୋଛୁ ଲିଲି ଉଠିଲା ।



# "ଦଣ୍ଡିବା ଶକ୍ତି ଯାର ଥାଇ,
# ସେ ପୁଣି କ୍ଷମା ଆଚରଇ"

**ଶ୍ରୀ ଗୌରାଙ୍ଗ କୁମାର କର**
ଏମ୍. ଏ: (ଓଡ଼ିଆ), ଇତିହାସ ଏମ୍.ଇଡ଼

କଥାରେ ଅଛି, "ଦଣ୍ଡିବା ଶକ୍ତି ଯାର ଥାଇ, ସେ ପୁଣି କ୍ଷମା ଆଚରଇ।" ଏହି କଥାଟି ମନେ ପଡ଼ିଲେ ଆମ ଦେଶର ଜଣେ ମହାପୁରୁଷଙ୍କ କଥା ମନେ ପଡ଼େ। ସେ କାହାର ମନ୍ଦଗୁଣ ଦେଖିଲେ ଘୃଣା ନ କରି ଆଦର କରୁଥିଲେ। ତା' ସହିତ ଏମିତି ବ୍ୟବହାର କରୁଥିଲେ ଯେ ଚୋର ସାଧୁ ପାଲଟି ଯାଉଥିଲା। ଶତ୍ରୁ ମିତ୍ର ହୋଇ ଯାଉଥିଲା।

ଥରେ ରାତି ପ୍ରାୟ ଏଗାରଟାବେଳେ ଜଣେ ଲୋକ ତାଙ୍କ ଘର ଭିତରକୁ ପଶିଗଲା। ହାତରେ ଜିନିଷଟିଏ ଧରି ପଳାଇ ଯାଉଥିଲା। ସେତିକିବେଳେ ଗୋଟିଏ ଚାକର ତାକୁ ଧରି ପକାଇଲା। ଚୋର, ଚୋର ବୋଲି ହୁରି ପଡ଼ିଗଲା। ପାଖ ପଡ଼ଶା ଓ ଘରଲୋକ ଧାଇଁ ଆସିଲେ। ଘରର କର୍ତ୍ତା ମଧ୍ୟ ସେଠାରେ ପହଞ୍ଚିଗଲେ। ସେ ଲୋକଟିର ତାକୁରୁ ତଳପାଯାଏ ଚାହିଁ କହିଲେ, "ତୁମେ ଜଣେ ଭଦ୍ର ଲୋକ ପରି ଜଣା ପଡ଼ୁଛ। ଚୋରୀ କରିବାଟା ତ ତୁମ ପକ୍ଷରେ ସୁନ୍ଦର ହେଲା ନାହିଁ।" ଲୋକଟି ତଳକୁ ମୁହଁ ପୋତି ଠିଆ ହୋଇଥାଏ। ସେ ଭାବୁଥାଏ, ତାକୁ ମାଡ ଦେବେ କମ୍ବା ବାନ୍ଧି ପକାଇ ପୋଲିସରେ ଦେବେ କିନ୍ତୁ ଏପରି ଦରଦଭରା କଥାଶୁଣି କାନ୍ଦି କାନ୍ଦି ହୋଇ କହିଲା, ଆଜ୍ଞା ମୋ ମୁହଁ ପୋଡ଼ି ଯାଉଛି। ଭୋକରେ ଛଟପଟ ହୋଇ କୁକର୍ମ କଲି। ମୋର ଅପରାଧ ମାର୍ଜନା କରନ୍ତୁ" ଗୃହକର୍ତ୍ତା ଲୋକଟିକୁ କୋଡ଼ିଏ ଟଙ୍କା ଦେଲେ।

ଏପରି କାମ କରିବାକୁ ଆଉ ମନାକଲେ । ଲୋକଟି ଅବାକ ହୋଇଗଲା । ଟଙ୍କାତକ ଧରି କାନ୍ଦି କାନ୍ଦି ଚାଲିଗଲା । ଆଉ କେବେ ଚୋରିକଲା ନାହିଁ ।

ସେହି ଗୃହ କର୍ତ୍ତା କିଏ ଜାଣିଛ ? ସେ ହେଉଛନ୍ତି "ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ" ସେ ଏକାଧାରରେ ଜଣେ ଓକିଲ, କବି, ସାମ୍ବାଦିକ ଓ ଦେଶଭକ୍ତ ତଥା ସ୍ୱାଧୀନତା ସଂଗ୍ରାମୀ । ସେ ୧୮୭୦ ମସିହା ନଭେମ୍ବର ୫ ତାରିଖ ଶନିବାର ଦିନ ପୂର୍ବ ବଙ୍ଗର ବିକ୍ରମପୁର ଜିଲ୍ଲାରେ ଜନ୍ମ ହୋଇଥିଲେ ତାଙ୍କର ବାପା ଭୁବନ ମୋହନ କଲିକତା ହାଇକୋର୍ଟରେ ଓକିଲ ତଥା ଆଟର୍ଣ୍ଣିଥିଲେ । ମାଆ ନିସ୍ତାରିଣୀ ଦେବୀ ଜଣେ ମହୀୟସୀ ନାରୀଥିଲେ ।ଆଠଜଣ ଭାଇ ଭଉଣୀ ଥିଲେ ।

ଚିତ୍ତରଞ୍ଜନ ତାଙ୍କ ପରିବାରର ୩ଟି ପ୍ରଧାନ ଗୁଣ ଧାରଣ କରିଥିଲେ । ସମସ୍ତ କାର୍ଯ୍ୟ ପ୍ରତିଯୋଗୀ ମନନେଇ କରୁଥିଲେ । ଯେତେ ବାଧାବିଘ୍ନ ଆସିଲେ ମଧ୍ୟ ନିଜର କର୍ତ୍ତବ୍ୟ ଓ କର୍ମରୁ ଓହରି ଯାଉ ନ ଥିଲେ । ଦୁଃଖି ରଙ୍କିଙ୍କ ପାଇଁ ତାଙ୍କର ଅପାର କରୁଣା ଥିଲା । ସାଧାରଣ ଲୋକେ ଭାରତକୁ ବଣ, ବିଲ, ଭୂଇଁ, ପାହାଡ଼ ଓ ନଦୀ ବୋଲି ଦେଖନ୍ତି । କିନ୍ତୁ ଚିତ୍ତରଞ୍ଜନଙ୍କ ଦୃଷ୍ଟିରେ ଭାରତ ହେଉଛି ମମତାମୟୀ ମାଆ । ମାଟି ମାଆକୁ ବିଦେଶୀ ଶାସନ କବଳରୁ ଉଦ୍ଧାର କରିବା ସଙ୍ଗେ ସଙ୍ଗେ ଦେଶବାସୀଙ୍କର ଦୁଃଖ ଘୁଞ୍ଚାଇବା ପାଇଁ ସେ ନିଜର ଜୀବନ ପଣ କରିଥିଲେ । ତେଣୁ ସେ ହେଲେ ଦେଶବନ୍ଧୁ ।

ଏହି ଦେଶବନ୍ଧୁ ତୁମପରି ଦିନେ ଶ୍ରେଷ୍ଠ ପିଲା ଥିଲେ । କେତେ ଅଳି ଅଝଟ କରୁଥିଲେ । କିନ୍ତୁ ବୟସ ଅନୁସାରେ ସବୁ କାମରେ ଆଗୁଆ ଥିଲେ । ଖେଳ ବେଳେ ଖେଳୁଥିଲେ । ପଢ଼ାବେଳେ ପଢ଼ୁଥିଲେ । ଗୁରୁଜନଙ୍କ କଥା ମାନି ଚଳୁଥିଲେ । ପାଠ ପଢ଼ାରେ ମଧ୍ୟ ଧୁରନ୍ଧର ଥିଲେ । ସାଙ୍ଗସାଥିମାନଙ୍କୁ ସଦା ସାହାଯ୍ୟ କରୁଥିଲେ । ୧୮୯୦ ମସିହରେ ବିଲାତକୁ ଆଇ ସି ଏସ୍ ହେବାପାଇଁ ଗଲେ । ଖୁବ୍ କମ୍ ଲୋକ ଏହି ଯୋଗ୍ୟତା ହାସଲ କରିପାରୁଥିଲେ ।

ଚିତ୍ତରଞ୍ଜନ ଏହି ଯୋଗ୍ୟତା ହାସଲ କରିଥିଲେ । କିନ୍ତୁ ସେତେବେଳେ ଇଂରେଜମାନେ ଭାରତରେ ଶାସନ କରୁଥିଲେ । ଭାରତବାସୀମାନଙ୍କ ଉପରେ ଅତ୍ୟାଚାର କରୁଥିଲେ । ଚିତ୍ତରଞ୍ଜନ ବିଲାତରେ ରହି ଭାରତବାସୀ ଛାତ୍ରମାନଙ୍କ ପକ୍ଷରୁ ଭାରତ ସପକ୍ଷରେ ପ୍ରଚାର କରିବାରୁ ଆଇ: ସି: ଏସ୍ ଚାକିରୀ ପାଇଲେ ନାହିଁ । କିନ୍ତୁ ସେଥିରେ ସେ ଭାଙ୍ଗି ପଡ଼ିଲେ ନାହିଁ । ଆଇ: ସି: ଏସ୍ ଚିତ୍ତରଞ୍ଜନ ଦାସ ପରିବର୍ତ୍ତେ ସେ ହେଲେ ବାରିଷ୍ଟର ଚିତ୍ତରଞ୍ଜନ ଦାସ । କଲିକତା ହାଇକୋର୍ଟରେ ଆଡ଼୍‌ଭୋକେଟ ହେଲେ । ସେତେବେଳେ ତାଙ୍କର ଘର ଅଭାବ ଅନାଟନ ମଧ୍ୟରେ ଗତି କରୁଥିଲା । ସେ ଭଲକରି ଗଣ୍ଡେ ଖାଇବାକୁ, ଖଣ୍ଡେ ପିନ୍ଧିବାକୁ ପାଉନଥିଲେ । କିନ୍ତୁ କଥାରେ ଅଛି, "କଷ୍ଟକଲେ କୃଷ୍ଣମିଳେ" ଦୁଃଖ, କଷ୍ଟ ସହ୍ୟକରି ଧୈର୍ଯ୍ୟ ଓ ଅଧ୍ୟବସାୟ ବଳରେ ସେହି ଚିତ୍ତରଞ୍ଜନ ଭାରତର ପ୍ରସିଦ୍ଧ ଓକିଲ ହେଲେ । ଆଲିପୁର ବୋମା ଷଡ଼ଯନ୍ତ୍ରରୁ ଶ୍ରୀଅରବିନ୍ଦଙ୍କୁ ଖଲାସ କଲେ । ମାସକୁ ୫୦ ହଜାର ଟଙ୍କା ଆୟ କଲେ । ତେବେ ଯିଏ ଆବାଲ୍ୟରୁ ଦେଶପ୍ରେମୀ, ଦେଶ ପାଇଁ ବଡ଼ ବଡ଼ ପଦବୀ ଛାଡ଼ିପାରେ, ସେ କଣ ଅର୍ଥ ଲୋଭରେ ଆଇନ ବ୍ୟବସାୟକୁ ଜାବୁଡ଼ି ଧରି ରହି ପାରିବ ?

ମହାତ୍ମାଗାନ୍ଧୀଙ୍କର ଡାକରାରେ ଦେଶବନ୍ଧୁ ସବୁଦିନ ପାଇଁ ଓକିଲାତି ଛାଡ଼ିଦେଲେ । ନିଜର ଘରକୁ କଂଗ୍ରେସ ସଂଗଠନ କାମରେ ଲଗାଇଲେ । ପରେ ସେ ଘର ଚିତ୍ତରଞ୍ଜନ ସେବାସଦନ" ନାଁରେ ଦେଶ ଓ ଜାତିର କଲ୍ୟାଣରେ ଲାଗିଲା । ବାରିଷ୍ଟର ଅଫିସ କଂଗ୍ରେସ ଅଫିସ ହୋଇଗଲା । ମହାତ୍ମାଗାନ୍ଧୀଙ୍କପରି ଚିତ୍ତରଞ୍ଜନ ମଧ୍ୟ ଅହିଂସା ନୀତିକୁ ଆଦର କରୁଥିଲେ । ସେ ପ୍ରଚାର କରିଲେ ଯେ ଦେଶ ସେବାରେ ଜାତି ଧର୍ମର ଭେଦ ନାହିଁ । ହିନ୍ଦୁ ମୁସଲମାନ ଭାଇଭାଇ ତାଙ୍କର ପୁଅ ସ୍ୱେଚ୍ଛାସେବକର ନେତୃତ୍ୱ ନେଇ ଜେଲ ଗଲେ । ସ୍ତ୍ରୀ ବାସନ୍ତୀ ଦେବୀ ଓ ଭଉଣୀ ଉର୍ମିଳା ଦେବୀ ରାସ୍ତାରେ ଖଦଡ଼ ଲୁଗା ବିକି ଗିରଫ ହେଲେ । ଦେଶବନ୍ଧୁ ମଧ୍ୟ ବାଦ ଗଲେନାହିଁ । ତଥାପି ସେ

ସ୍ୱାଧୀନତା ଆନ୍ଦୋଳନକୁ ଆଗେଇ ନେବା ପାଇଁ ମୋତିଲାଲ୍ ନେହେରୁ ଓ ଲାଲାଲଜପତ୍ ରାୟଙ୍କ ସହ ମିଶି 'ସ୍ୱରାଜଦଳ' ଗଠନ କଲେ ! ସାରା ଦେଶରେ ବୁଲି ଲୋକଙ୍କ ସେବାକଲେ, ସ୍ୱାଧୀନତାର ସନ୍ଦେଶ ଶୁଣାଇଲେ । ସ୍ୱାଧୀନତା ଆନ୍ଦୋଳନ ପାଇଁ ପଥ ପରିଷ୍କାର କରିଦେଲେ

ଜୀବନର ଶେଷ ଭାଗରେ କଲିକତା କର୍ପୋରେସନ୍‌ର ମେୟର ହୋଇ-ଥିଲେ । ସୁଭାଷଚନ୍ଦ୍ର ବୋଷ ତାଙ୍କର ମୁଖ୍ୟସଚିବଥିଲେ । ଦେଶପାଇଁ ଦେଶବନ୍ଧୁ ଏତେ ପରିଶ୍ରମ କରି ମଧ୍ୟ ବିଭିନ୍ନ କବିତା, ପତ୍ରିକା, ଓ ସମ୍ବାଦ ପତ୍ର ମାଧ୍ୟ-ମରେ ସମାଜ ସଂସ୍କାରଆଣିବାକୁ ଭୁଲିଯାଇ ନଥିଲେ । ଗୁରୁତାକ୍ୟକୁ ମଧ୍ୟ ନିଷ୍ଠାର ସହ ପାଳନ କରୁଥିଲେ । ସେ ଥିଲେ ଯୁଗ ପୁରୁଷୋତ୍ତମ ଶ୍ରୀ ଶ୍ରୀ ଠାକୁର ଅନୁକୂଳ ଚନ୍ଦ୍ରଙ୍କର ପରମ ଭକ୍ତ ।

ଦେଶବନ୍ଧୁ ୧୯୨୫ ମସିହା ଜୁନ୍ ୧୬ ତାରିଖରେ ଇହଧାମ ଛାଡ଼ି ଚାଲି ଯାଇ ମଧ୍ୟ ଚିର ଅମର ହୋଇ ରହିଛନ୍ତି ।

ପ୍ରଧାନ ଶିକ୍ଷକ,
କୁଡୁମୁଲୁଗୁମା ଉଃ ମ. ଇ: ବିଦ୍ୟାଳୟ

## ଅନୁରୋଧ

ମାଲକାନଗିରି ଜିଲ୍ଲାର ନଅ ବର୍ଷରୁ ୪୫ବର୍ଷର ନିରକ୍ଷର ଭାଇ ଭଉଣୀ ମାନଙ୍କୁ ମୋର ଅନୁରୋଧ ସେମାନଙ୍କ ଭାଇ ଭଉଣୀ ଓ ପୁଅ ଝିଅଙ୍କୁ ଶିକ୍ଷିତ କରାଇବା ସଙ୍ଗେ ସଙ୍ଗେ ଜିଲ୍ଲାପାଳଙ୍କ ସାକ୍ଷର ଅଭିଯାନ କାର୍ଯ୍ୟକ୍ରମରେ ସମସ୍ତେ ସାମିଲ୍ ହୋଇ ନିଜର ମୌଳିକ ଅଧିକାର ତଥା ସୁସ୍ଥ ଜୀବନଯାପନ ନିମନ୍ତେ ସମ୍ପୂର୍ଣ୍ଣ ସାକ୍ଷର ହୁଅନ୍ତୁ ।

ପ୍ରତିଷ୍ଠାତା – ଶିଶୁପଦ୍ମ

# 'ମୋ ଗାଁ'

ଦିଲିପ କୁମାର ପାଇକରାୟ

ମୋ ଗାଁ ଟି ନଈ ଆର ପଟେ
କୁନ୍ଦ ହୋଇ ନଈଟି ବହେ
ତା କୂଳେ ଫଳଇ କଣ୍ଢେଇ କୋଳି
ବୁଲି ବୁଲି କୋଳି ଖାଏ ମୁଁ ତୋଳି
ଗାଁ ସେ ମୁଣ୍ଡେ ମୋ ସ୍କୁଲ ଘର
ସକାଳୁ ଉଠି ମୁଁ ବସ୍ତାନି ଧରି
ଗାଁ ସ୍କୁଲକୁ ଯାଏ ମୁଁ ପଢ଼ି
ଠିଆ ହୋଇ ଦେଖେ ଗାଁ ଧାଡ଼ିକି
କେନ୍ଦୁ କେନ୍ଦୁ ଫୁଲ କେତେ ଯେ ଫୁଟି
ମହ ମହ ବାସ ଉଠଇ ଛୁଟି
ହଳୁଆ ଭାଇ ଜମିକୁ ଯାଏ
ବୁଡ଼ିଲେ ସୁରୁଜ ଘରକୁ ଫେରେ
ମୁଠେ ପଖାଳଟେ ଦିନଟା ସରେ
ବାର ମାସେ ତେର ଯାତରା
କେତେ ଶୋଭା ପାଏ ଦୋକାନ ସାରା
ଘରେ ହୁଏ କେତେ ଆରିସା ପିଠା
ଜଣ ଠକ ଠକ ହୁଏ ଦ ହେଉ ଛଣା
କେତେ ହୁଏ ମଜା ମଉଜ
ଗାଁ ନାଚ ଉଠେ ବାଜା ଠମକେ
ମୋ ଗାଁ ଯେ କେତେ ସୁନ୍ଦର
ଭୁଲି ହୁଏ ନାହିଁ ତା ମନୋହର ।



## "ଠିକ ରାଇଜର ଠିକ ରାଜା"

ରଚନା—କୁମାରୀ ମିନାକ୍ଷୀ କର
ପଞ୍ଚମ ଶ୍ରେଣୀ

ଠିକ ଶିଶୁ ମୁହିଁ ଠିକ ରାଇଜରେ ହେବ ମୁହିଁ ଠିକ ରାଜା,
ଠିକ ଗଛଲତା ଠିକ ପଶୁ ପକ୍ଷୀ ଠିକ ଶିଶୁ ହେବ ପ୍ରଜା ।
ସଭିଙ୍କ ଦୁଃଖରେ ସଭିଙ୍କ ସୁଖରେ ସମଭାଗୀ ହେବ ଜାଣ,
ଗଛ ଲତା ପଶୁ ପକ୍ଷୀ ମଣିଷର ଦେହେ ଅଛି ଏକ ପ୍ରାଣ ।
ଗଛ ଲତା ପଶୁ ପକ୍ଷୀଙ୍କୁ ଗୁଡ଼ଣ ମଣିଷ ନ ପାରେ ରଖି,
ତଥାପି ତାଙ୍କର ଆତ ଜାତ ଭଲ ମନ୍ଦ ନ ବୁଝିଇ କେହି ।
ମୋ ପରଜା ଭଲ ପାଉ ବା ନ ପାଉ ମୁଁ ତାଙ୍କୁ ଭଲ ପାଇବି,
ରାଜା ହୋଇ ପକ୍ଷପାତ ଯଦି କରେ ନରକେ ବାସ କରିବି ।

ଉନ୍ନୀତ ମଧ୍ୟ ଇଂରାଜୀ ବିଦ୍ୟାଳୟ
କୁଡ଼ୁମୁଲୁଗୁମା



❋ ତୁମେ ଯଦି ସତ୍ୟ ଅଭିମୁଖେ ଯାତ୍ରା କର ତେବେ ବିପଦ ହେବ ତୁମର ପାହାଚ, ଧୈର୍ଯ୍ୟଧରି ଆଗେଇ ଚାଲ ।

❋ ତୁମର ମନ ଯଦି ଶ୍ରେଷ୍ଠ ତୁମେ ତା ଭିତରେ ବଡ ଆଶାଟିଏ ରଖି ଦେଇ ପାରିବ ନାହିଁ ।

# ଆମେ ସବୁ ଟିକି ଫୁଲ

ଶିବବ୍ରତ ଦାଶ (ଜକ୍କୁ)

ଆମେ ସବୁ ଟିକି ଫୁଲ
ଏଇ ବଗିଚାର
ନାଲି ନେଳି, ହଳଦିଆ ସବୁଜ ରଙ୍ଗ
ହେନା, ଜୁଇ, ଜାଇ, ମଲ୍ଲୀ, ଚମ୍ପା, ଟଗର
ହସିବୁ, ଖେଳିବୁ ଆମେ ଫୁଲ,
ଏଇ ବଗିଚାର ।

ଘର ଠାରୁ ବାହାର ଚାରିଆଡ଼େ ସୁବାସ ଆମର
କିଏ ପର କିଏ ଆପଣାର
ସଭିଏଁ ଆମର ଅତି ନିଜର
ହସ କାନ୍ଦ ଭରା ଆମ ପରିବାର
ବାପ, ମାଆ, ଭାଇ, ଭଉଣୀ ଚାରି ଜଣ ମାତର
ଆମ ପରିବାର ଅଟେ
ଶ୍ରେଷ୍ଠ ପରିବାର ।

ପଢ଼ିବୁ ଲେଖିବୁ ଆମେ ହୋଇବୁ ସାକ୍ଷର
ମାଲକାନଗିରି ଜିଲ୍ଲା ଚିର, ସବୁଜ, ସୁନ୍ଦର
ଆସ ଭାଇ, ଭଉଣୀ ସବେ ହେବା ଏକାକାର
ଆମ ଜିଲ୍ଲାକୁ ଆଗେଇ ନେବା ରଖିବାନି ନିରକ୍ଷର
ଆମେ ସବୁ ଟିକି ଫୁଲ
ଏଇ ବଗିଚାର ।
ମାନ ଅଭିମାନ ସବୁ କରିଦେବା ଦୂର
ହସି ହସାଇବା ପରକୁ କରି ଆପଣାର
ସଭିଏଁ ଆମ ନିଜର
ଟିପ ଛାଡ଼ି ଦେଇ କଲମ ଧରିବା
କରିବା ସାକ୍ଷର ।

୭ମ ଶ୍ରେଣୀ
ଚନ୍ଦ୍ରକାଣ୍ଡା ସରକାରୀ ଉଚ୍ଚ
ବାଳକ ବିଦ୍ୟାଳୟ

# କଣ୍ଢେଇକୁ ଚିଠି

ହିମାଚଳ ପଣ୍ଡା, ଶିକ୍ଷକ

ସ୍ନେହର କଣ୍ଢେଇ,

ଆଜି ବହୁଦିନ ପରେ ଚିଠିଟିଏ ଲେଖୁଛି । ଆଶା ଭଲରେ ଥିବୁ । ତୁ' ମୋ ପାଖରୁ ଦୂରେଇ ରହିଲୁ ଯେ ବହୁଦିନ ହେଲେ ମନେ ପକାଇଲୁ ନାହିଁ । ଦିନଥିଲା ତୋତେ ଛାଡି ମୁଁ ମୁହୂର୍ତ୍ତେ ମଧ୍ୟ ରହିପାରୁ ନଥିଲି । ମୋର ଖାଇବା, ଖେଳିବା, ଶୋଇବା ସବୁ ସମୟରେ ମୋ', ସହ ରହୁଥିଲୁ । କଣ୍ଢେଇ ତୁ ମୋତେ କେତେ ରୂପରେ ମନେଇ ନ ଥିଲୁ । କେତେବେଳେ ତୁ ଥିଲୁ ଗାଣ୍ଡିବଧାରୀ ଅର୍ଜ୍ଜୁନ, ଆଉ କେତେବେଳେ ବଂଶୀଧାରୀ ଶ୍ରୀକୃଷ୍ଣ । କୃଶ ବଢ଼ ଯୀଶୁ, ବଳଦ ଗାଡ଼ିର ଚାଳକ, ଗନ୍ଧମାଦନଧାରୀ, ସୀତାଙ୍କ ପ୍ରାଣ ପ୍ରିୟ ରାମଚନ୍ଦ୍ର କେଉଁ ରୂପରେ ନଥିଲୁ ତୁ ? ସଦା ସର୍ବଦା ମୋ' ପାଖେ ପାଖେ ରହି ମୋତେ ଖୁସିର ସୋତ ଅଜାଡି ଦେଉଥିଲୁ । ତୁ ପଦେକଥା ବିନା ମନ ଖୋଲି ଦେଲେ ତୋ'ର ମନକଥା ଗୋଟି ଗୋଟି ମୁଁ ବୁଝିଥିଲି । ସେଥିପାଇଁ ଠିକ୍ ସମୟରେ ତୋତେ ଖୁଆଉଥିଲି , ଗୀତବୋଲି ଶୋଇ ଦେଉଥିଲି । ମୁଁ ବରଂ ପାଉଡର ଲଗାଉ ନ ଥିଲି, ତୋତେ ପାଉଡର ବୋଳି ଦେଉଥିଲି, ଯୁଆଡ଼େ ଗଲେ ସାଙ୍ଗରେ ନେଉଥିଲି ।

ମୁଁ ଯେତେ ଯେତେ ବଡ଼ ହେଲି ତୁ ଦୂରେଇ ଦୂରେଇ ରହିବାକୁ ଚେଷ୍ଟା କଲୁ । ମୋର ପାଠ ପଢ଼ା ଆଳରେ ତୁ' ମୋ ସହ ସମ୍ପର୍କ କମେଇ ଦେଲୁ । ପରିଶେଷରେ କର୍ମଜଞ୍ଜାଳ ମଧ୍ୟକୁ ମୋତେ ଠେଲିଦେଇ ତୁ ମୋତେ ପୁରା ଭୁଲି-ଗଲୁ । ମୁଁ ମଧ୍ୟ ଲୋଭ ମୋହ ମାୟାରେ ବୁଡି ତୋତେ ମନେପକାଇବାକୁ ସମୟ ପାଇ ନ ଥିଲି ।

ଆଜ ଜନ୍ମ ବାର୍ଦ୍ଧକ୍ୟର ବୋଝବୋଝ ନପାର ଶେଯରେ ଶୋଇ ଶୋଇ ତୋ' ସହ ଖେଳ ବିତାଇଥିବା ଦିନଗୁଡ଼ିକ ଖୋଜି ଖୋଜି ତୋ' ପାଖକୁ ଏ ଚିଠି ଟି ଲେଖୁଛି । ସତରେ ମୋର ଏ ଶେଷ ସମୟରେ ତୁ' କଣ ମୋ' ପାଖକୁ ଆସିବୁ ମୋ ସହ ଟିକେ ଖେଳିବା ପାଇଁ ?

ଜରାଜୀର୍ଣ୍ଣ ଶରୀର ନେଇ ସଦାସର୍ବଦା ଶଯ୍ୟାଶାୟୀ ତୋ'ଠାରୁ ଅଜ୍ଞାତର ବେଦନାଏ ସ୍ନେହ ଆଶାକରି ଏ ଚିଠିଟି ଲେଖୁଛି ଅନ୍ତତଃ ତୋ'ର ଉପସ୍ଥିତି ମୋ'ର ଯନ୍ତ୍ରଣାକୁ ଲାଘବ କରିବାରେ ସମର୍ଥ ହେବ । ମୋର ପରିବାର ବର୍ଗ ବନ୍ଧୁ ବାନ୍ଧବ, ସାଙ୍ଗ ସାଥୀଏ ନିଃସହାୟ ବୃଦ୍ଧାବସ୍ଥାରେ ପ୍ରତ୍ୟକ୍ଷ ଘୃଣା ନ କଲେ ବି ପରୋକ୍ଷରେ ସମୟ ଅଭାବ କର୍ମବ୍ୟସ୍ତତା ପ୍ରଭୃତି ଛଳରେ ଦୂରେଇ ରହି ସମ୍ପର୍କ ତୁଟାଇ ଦେଇଛନ୍ତି । ଏଣୁ ତୋ'ଠାରେ ସ୍ନେହ ଟିକକର ଅନ୍ତିମ ଆଶା ପୋଷଣ କରି ରହିଛି ।

|| ଇତି ||

ତୋର

ବହୁଦିନତଳ ସାଙ୍ଗ

ଜୟପୁରିଆ ଗୁଡ଼ା

ପ୍ରାଥମିକ ବିଦ୍ୟାଳୟ ।

---

ପବିତ୍ର ନବବର୍ଷର ଶୁଭ ଅବସରରେ ଶିଶୁପ୍ରଭା ତାର ଅଗଣିତ ପାଠକ ପାଠିକା; ଲେଖକ ଲେଖିକା, ଗ୍ରାହକ ଓ ବିଜ୍ଞାପନ ଦାତାମାନଙ୍କୁ ଅଭିନନ୍ଦନ ଜଣାଉଛି ।

ସମ୍ପାଦକ
ଶି ଶୁ ପ୍ର ଭା

# ଦୁଇ ସାଙ୍ଗର କଥା

**❋ ମନୋଜ ସାହୁ**

ବିଜୟପୁର ରାଜ୍ୟର ରାଜା ପ୍ରତାପ ସିଂହ ଥରେ ତାଙ୍କ ମନ୍ତ୍ରୀଙ୍କୁ ପ୍ରଶ୍ନ କଲେ, ମନ୍ତ୍ରୀ ! ଆଜି କାଲି ଯୁଗରେ ଜଣେ ପ୍ରକୃତ ବନ୍ଧୁ ମିଳିବା ବଡ଼ କଷ୍ଟ କଥା । ଏ ଭଳି ବନ୍ଧୁତ୍ୱ ଥିବା କାହାକୁ ତୁମେ ଜାଣ କି ? ମୁଁ ଖୁସି ହୁଅନ୍ତି ଯଦି ତୁମେ ସେ ଭଳି ବ୍ୟକ୍ତି ଦୁହିଁଙ୍କୁ ମୋ ପାଖକୁ ଡାକି ଆଣନ୍ତ । ମନ୍ତ୍ରୀ କହିଲେ ମହାରାଜ ! ଆପଣଙ୍କ ଖୁସିପାଇଁ ମୁଁ ଗୋଟିଏ ସପ୍ତାହ ମଧ୍ୟରେ ସେପରି ବନ୍ଧୁତ୍ୱ ଥିବା ଦୁଇ ସାଙ୍ଗଙ୍କୁ ଆପଣଙ୍କ ପାଖରେ ହାଜର କରାଇବି ।

ମୁକୁନ୍ଦ ଓ କୁମୁଦ ଦୁଇଜଣ ପିଲାବେଳର ସାଙ୍ଗ । ବର୍ତ୍ତମାନ ସେମାନେ ଯୁବକ । ସେମାନେ ଜାତିରେ ତନ୍ତୀ । ଭଲ ଭଲ ଲୁଗା ବୁଣି ବିକ୍ରୀ କରି ଦୁଇ ପଇସା ପାଆନ୍ତି । ଫଳସ୍ୱରୂପ ସେମାନେ ବହୁତ ଭଲ ପାଆନ୍ତି । ଉଭୟଙ୍କ ମଧ୍ୟରେ ଅତୁଟ ବିଶ୍ୱାସ ଥାଏ । ସେମାନଙ୍କ ମଧ୍ୟରେ କେବେହେଲେ ମନାନ୍ତର ବା ମତାନ୍ତର ହୁଏ ନାହିଁ ।

ଅନେକ ଖୋଜାଖୋଜି ପରେ ମନ୍ତ୍ରୀ ସେମାନଙ୍କୁ ନେଇ ରାଜାଙ୍କ ପାଖରେ ହାଜର କରାଇଲେ । ରାଜା ଖୁସି ହୋଇ ସେମାନଙ୍କ ବ୍ୟବସାୟ ପାଇଁ କିଛି ଅର୍ଥ ସାହାଯ୍ୟ ଦେଇ ଫେରାଇ ଦେଲେ । ସେତେବେଳକୁ ରାତି ହୋଇ ଯାଇ ଥାଏ । ରାସ୍ତାରେ ଗଲାବେଳେ ହଠାତ୍ ଦଳେ ଚୋର ସେମାନଙ୍କୁ ଆକ୍ରମଣ କଲେ । ସେମାନଙ୍କ ପାଖରେ ଥିବା ସମସ୍ତ ପଇସା ପତ୍ର ଛଡ଼ାଇ ନେଲେ । ଦୁଇ ସାଙ୍ଗ ଭିତରୁ ମୁକୁନ୍ଦକୁ ତାଙ୍କ ସହିତ ଯିବା ପାଇଁ ଛୁରୀ ଦେଖାଇ ଡରା-ଇଲେ । ସେତେବେଳେ କୁମୁଦ ତା' ସାଙ୍ଗକୁ ଛାଡ଼ିଦେବା ପାଇଁ ଅନେକ ଅନୁ-

ବୋଧ କଲା । ସେମାନଙ୍କ ଗୋଡ଼ ତଳେ ଦଳିହେଲା । ଅନେକ ଗୁହାରି ପରେ ଚୋରମାନେ ଗୋଟିଏ ସର୍ତ୍ତରେ ତା' ସାଙ୍ଗକୁ ଛାଡ଼ିଦେବା ପାଇଁ ରାଜି ହେଲେ । ତାହା ଥିଲା କୁମୁଦ ତାର ସମସ୍ତ ଜମିବାଡ଼ି ଘର ଦ୍ୱାର ଗୋଟିଏ ଦିନ ମଧ୍ୟରେ ବିକ୍ରୟ କରି ସମସ୍ତ ପଇସା ସହ ଆସନ୍ତା କାଲି ଠିକ୍ ଏହି ସମୟରେ ଏଠାରେ ଉପସ୍ଥିତ ହେବ । ଯଦି ଏହା କାହା ଆଗରେ ପ୍ରକଟ କରେ ତେବେ ତାକୁ ମାରି ଦିଆଯିବ । ଅନ୍ୟ ଉପାୟ ନପାଇ କୁମୁଦ ସେମାନଙ୍କ କଥାରେ ରାଜି ହେଲା ଓ ପ୍ରତିଶ୍ରୁତି ମଧ୍ୟ ଦେଲା ।

ବିଚରା କୁମୁଦ ବଡ଼ ଅଡୁଆରେ ପଡ଼ିଗଲା । ବର୍ତ୍ତମାନ ସେ କରିବ କଣ ? ସେ ରାତିସାରା ଚିନ୍ତାରେ ଚେଇଁ ରହିଲା । ତା ପରଦିନ ଦିନସାରା ଧାଁ ଦୌଡ଼ କରି ତାର ସମସ୍ତ ସମ୍ପତ୍ତିକୁ ବିକ୍ରୀ କରିବାକୁ ଲାଗିଲା । ଏଥିପାଇଁ ପରିବାରର ଅନ୍ୟ ସଦସ୍ୟମାନଙ୍କ ପ୍ରତିବାଦକୁ ମଧ୍ୟ ସହିବାକୁ ପଡ଼ିଥିଲା । ସେ ଯାହା ହେଉ କୌଣସି ପ୍ରକାରେ ସବୁତକ ପଇସା ପତ୍ର ଧରି ଠିକ୍ ସେହି ସମୟରେ ଚୋରମାନଙ୍କ ପାଖରେ ଉପସ୍ଥିତ ହେଲା ।

ଚୋରମାନେ ତାର ସବୁତକ ପଇସା ନେଇଗଲେ । କିନ୍ତୁ ସେଥିରେ ସେମାନେ ସନ୍ତୁଷ୍ଟ ନ ଥିଲେ । ଅଳ୍ପ ପଇସା କହି ତାକୁ ମାଡ଼ ଦେଲେ । ସେମାନେ କୁମୁଦକୁ ପୁଣି ଏକ ସର୍ତ୍ତ କଥାକହିଲେ । ତାହାଥିଲା ତା ସାଙ୍ଗର ଜୀବନ ରକ୍ଷା ପାଇଁ ତାକୁ ନିକଟରେ ଥିବା ଗୋଟିଏ ଉଚ୍ଚପାହାଡ଼ ଉପରୁ ତଳକୁ ଡେଇଁବାକୁ ପଡ଼ିବ । ଏହାଛଡ଼ା ତା'ର ଆଉ କୌଣସି କଥା ଶୁଣାଯିବ ନାହିଁ । କୁମୁଦ ନିଜର ସାଙ୍ଗ ପାଇଁ ପୁଣି ଏକ ଅଡୁଆ ପରିସ୍ଥିତିରେ ପଡ଼ିଲା । ତାକୁ ତା'ର ସାଙ୍ଗକୁ ଚୋରଙ୍କ କବଳରୁ ରକ୍ଷା କରିବାକୁ ହେବ । ନ'ହେଲେ ଚୋରମାନେ ତା'ସଙ୍ଗ ମୁକୁନ୍ଦକୁ ମାରିଦେବେ । ନିଜେ ପଛେ ମରିବ କିନ୍ତୁ ତା' ସାଙ୍ଗର ଜୀବନ ରକ୍ଷାକରିବ, ଏଥିପାଇଁ ସେ ଦୃଢ଼ ନିଷ୍ପତ୍ତି କଲା । ସେ ଚୋରଙ୍କ କଥାରେ ରାଜି ହୋଇଗଲା ।

ପରେ ଚୋରମାନେ ତାକୁ ନେଇ ପାହାଡ ଉପରକୁ ଉଠିଲେ । ଏଥର ତାକୁ ତଳକୁ ଫୋପାଡିବା ପାଇଁ କୁହାଗଲା । ସେଥିରେ କୁମୁଦ ଆଦୌ ବିଚଳିତ ନ ହୋଇ ତଳକୁ ଡେଇଁବା ପାଇଁ ଉଦ୍ୟତ ହେଲା । ଠିକ୍ ଏତିକିବେଳେ ଛଦ୍ମ ବେଶରେ ଲୁଚି ରହିଥିବା ରାଜା ଓ ମନ୍ତ୍ରୀ ତାର ହାତ ଧରି ପକାଇଥିଲେ । ସେମାନେ ନିଜର ପରିଚୟ ଦେଇ ଉଭୟ ସାଙ୍ଗକୁ ଭେଟାଇ ଦେଲେ । ସେତେବେଳେ ଅଶ୍ରୁଳ ନୟନରେ ପରସ୍ପରକୁ ଆଲିଙ୍ଗନ କରିବାକୁ ଲାଗିଲେ । ରାଜା ଆଶ୍ଚର୍ଯ୍ୟହୋଇଗଲେ । କାରଣ ଏଭଳି ସାଙ୍ଗ ତାଙ୍କ ରାଜ୍ୟରେ ଥିବେ ବୋଲି ସେ ବିଶ୍ୱାସ କରୁ ନ ଥିଲେ । ଦୁଇ ସାଙ୍ଗ ସେମାନଙ୍କର ଅର୍ଥ ସମସ୍ତ ଫେରି ପାଇଥିଲେ । କୁମୁଦ ତାର ସମସ୍ତ ସମ୍ପତ୍ତି ଫେରି ପାଇଲା । ସେମାନଙ୍କୁ ଅନେକ ପୁରସ୍କାର ମଧ୍ୟ ଦିଆଗଲା । ଏଥିପାଇଁ ଶାସ୍ତ୍ରରେ କୁହା ଯାଇଛି । ଭଲ ବନ୍ଧୁ, ଭଲ କଥା ଓ ଭଲ ସାଙ୍ଗ ମିଳେ ତାକୁ ଆମେ ସାଇତି ରଖିବା ଉଚିତ୍ ।

ସମ୍ପାଦକ
ମାଲ୍ୟବନ୍ତ, ଗାୟତ୍ରୀ କୁଟୀର
ମାଲକାନଗିରି

---

**ପ୍ରକାଶ ପ୍ରତୀକ୍ଷାରେ :-**

# ମାଲକାନଗିରି ଦର୍ପଣ

ଲେଖକ—ଶ୍ରୀ ଅର୍ଜୁନ ନାଞ୍ଚା

---

# ଆମ ଟିକି ବଗିଚା

ଶ୍ରୀମତୀ ଗୋଲାପ କୁମାରୀ ସାହୁ
ଶିକ୍ଷୟିତ୍ରୀ

ଦେଖ ହେ ଅଜା, ଆମ ଟିକି ବଗିଚା
ଦେଖିଲେ ତୁମକୁ ଲାଗିବ ମଜା
ପ୍ରଜାପତି ବୁଲେ ଛପି ଛପିକା
ଭ୍ରମର ଯାଉଛି ଲୁଚି ଲୁଚିକା

ଟଗର, ମାଳତୀ, ହେନା ବଉଳ
ଗୋଲାପ, କେତକୀ କଅଁ ଚମ୍ପାଳ
କେତେ ରଙ୍ଗରେ ହୋଇଛି ସଜା
ଅଜା ହେ ଅଜା କେମିତି ମଜା

ବଉଳ ଫୁଲ ହଲି ହଲିକା
ହାତ ଠାରି ଡାକେ ଥରି ଥରିକା
ମାଳତୀ ଫୁଲର ଆଖି ମିଟିକା
କହୁଛି ଅଜାଙ୍କୁ ହସି ହସିକା
ସତ କହିଲ ଅଜା
ଆମ ବଗିଚାଟି ସତେ ବଢିଆ ମଜା

ମାଲକାନଗିରି

# ନାରଦଙ୍କ ଗର୍ବ

—ଅମର ରଞ୍ଜନ ତ୍ରିପାଠୀ
ଅଷ୍ଟମ ଶ୍ରେଣୀ

ଥରେ ଦେବର୍ଷି ନାରଦଙ୍କ ନିଜର ସଙ୍ଗୀତ ଜ୍ଞାନ ପାଇଁ ବଡ଼ ଗର୍ବ ହୋଇଗଲା । ତେଣୁ ଭଗବାନ ତାଙ୍କୁ କହିଲେ ଯେ ତୁମର ଜ୍ଞାନ ବର୍ତ୍ତମାନ ସୁଦ୍ଧା ପୂର୍ଣ୍ଣ ହୋଇନାହିଁ । ଏହା ସତ୍ତ୍ୱେ ନାରଦ ବୀଣା ବଜାଇ ଭଗବାନଙ୍କ ଗୁଣ ଗାନ କରି ଜନପୁରରେ ବିଚରଣ କଲେ ।

ନାରଦ ବିଷ୍ଣୁ ଲୋକକୁ ଯାଉଥିବାବେଳେ ରାସ୍ତାରେ କେତେକ ସୁନ୍ଦର ସ୍ତ୍ରୀ ଓ ପୁରୁଷ ଆହତହୋଇ ପଡ଼ିଛନ୍ତି । ସେମାନଙ୍କର କିଛି ଅଙ୍ଗ କଟିଯାଇଛି । ଦେବର୍ଷି ନାରଦ ଏହାର କାରଣ ପଚାରିବାରୁ ସେମାନେ ଅତି ଦୁଃଖର ସହିତ କହିଲେ—ଆମେ ସବୁ ହେଉଛୁ ରାଗ ରାଗିଣୀ । ଆମର ସବୁ ଅଙ୍ଗ ପ୍ରତ୍ୟଙ୍ଗ ଥିଲା । ଆଜି କାଲି ନାରଦ ନାମକ ଏକ ବ୍ୟକ୍ତି ଓଲଟା ସିଧା ରାଗ ରାଗିଣୀ ଆଳାପ କରିବା ଦ୍ୱାରା ଆମର ଏପରି ଅବସ୍ଥା ହୋଇଛି । ଭଗବାନ ବିଷ୍ଣୁ ଆମର ଏହି ଦୁର୍ଦ୍ଦଶା ଦୂର କରି ପାରିବେ ।

ନାରଦ ଏହିକଥା ଶୁଣି ଉଦାସ ହୋଇଗଲେ । ଯେତେବେଳେ ସେ ବିଷ୍ଣୁ ଲୋକରେ ପହଞ୍ଚିଲେ ପ୍ରଭୁ ତାଙ୍କର ଉଦାସ ମନୋଭାବର କାରଣ ପଚାରିଲେ । ନାରଦ ସବୁ କଥା ତାଙ୍କୁ କହିଦେଲେ । ଭଗବାନ କହିଲେ ମୁଁ ଏହି କଳାର ମର୍ମ ଜ୍ଞାନ ଜାଣେ ନାହିଁ ।

ନାରଦଜୀ ଭଗବାନ ଶଙ୍କରଙ୍କ ପାଖକୁ ଯାଇ ସବୁ କଥା କହିଲେ । ପ୍ରଭୁ ଶଙ୍କର ଉତ୍ତର ଦେଲେ—ମୁଁ ଠିକ୍ ଢଙ୍ଗରେ ରାଗ ରାଗିଣୀ ଆଳାପ କଲେ

ଏବ୍ଡ ଆହତମାନେ ସେମାନଙ୍କ ଅଙ୍ଗ ଫେରପାଇବେ । ତେବେ ସେଠାରେ ସଙ୍ଗୀତ ଶୁଣିବା ପାଇଁ ଜଣେ ଉତ୍ତମ ଶ୍ରୋତା ଆବଶ୍ୟକ । ଏହା ଶୁଣି ନାରଦଙ୍କୁ ଆନ୍ତର ଦୁଃଖ ହେଲା । ସେ ଚିନ୍ତା କଲେ, ମୁଁ କ'ଣ ସଙ୍ଗୀତ ଶୁଣିବାକୁ ମଧ୍ଯ ଯୋଗ୍ୟ ନୁହେଁ ? ସେ ଉତ୍ତମ ଶ୍ରୋତା ବାଛିବାକୁ ମଧ୍ଯ ପ୍ରାର୍ଥନାକଲେ । ଭଗବାନ ଶଙ୍କର ଏହାଶୁଣି ଭଗବାନ ବିଷ୍ଣୁଙ୍କର ନାମ ବାଛିଲେ ।

ଶିବଲୋକରେ ସଙ୍ଗୀତ ସମାରୋହ ଆରମ୍ଭ ହେଲା । ସବୁ ଦେବ, ଗନ୍ଧର୍ବ ଏବଂ ରାଗ ରାଗିଣୀ ସେଠାରେ ତୁରନ୍ତ ଉପସ୍ଥିତ ହେଲେ । ମହାଦେବ ଶିବଙ୍କର ରାଗ ଝଙ୍କାରରେ ଆହତଙ୍କର ଅଙ୍ଗ ପୂର୍ଣ୍ଣହୋଇଗଲା । ଏହା ଦେଖି ସାଧୁ ହୃଦୟ ନାରଦଙ୍କ ଅହଙ୍କାର ଦୂର ହୋଇଗଲା ।

●

ସରକାରୀ ମଦ୍ଧ ବିଦ୍ୟାଳୟ
ବା ଲ ମେ ଲା

---



---

# ବଗ ଓ କଇଁଛ

✻ କୁମାରୀ ଇଲା ପଣ୍ଡା

ଗୋଟିଏ ପୋଖରୀରେ କଇଁଛଟିଏ ଥାଏ । ଦୁଇଟି ବଗ ପ୍ରତିଦିନ ମାଛ ଖାଇବା ପାଇଁ ସେହି ପୋଖରୀକୁ ଆସନ୍ତି । ଦିନେ ଗୋଟିଏ ବଗ କହିଲା, " କଇଁଛ ଭାଇ ! ଲୋକମାନେ ଏଇ ପୋଖରୀ ଶୁଖାଇ ମାଛ ଧରିବେ । ତୁମେ ଅନ୍ୟ ପୋଖରୀକୁ ଚାଲିଯାଅ ।" କଇଁଛ କହିଲା, "ତୁମେ ସିନା ଉଡ଼ି ଉଡ଼ି ଯାଇ ପାରିବ, ମୋର ତ ଡେଣାନାହିଁ । ମୁଁ ଯିବି କେମିତି ?" ଏଇ କଥାଶୁଣି ବଗକହିଲା "ତୁମେ ଆସ, ଆମେ ଦୁହେଁ ମିଶି ଅନ୍ୟ ପୋଖରୀକୁ ତୁମକୁ ନେଇଯିବୁ ।" ଗୋଟିଏ ବାଡ଼ିର ଦୁଇ ପଟକୁ ବଗ ଦୁଇଟି ନିଜ ଥଣ୍ଟରେ ଧରିଲେ ଏବଂ କଇଁଛ ବାଡ଼ି ମଝିରେ ଧରିଲା । ଏହିପରି ବଗ ଦୁଇଟି କଇଁଛକୁ ଶୂନ୍ୟରେ ଶୂନ୍ୟରେ ଉଡ଼ାଇ ନେଉଥିବା ସମୟରେ କେତେଜଣ ପିଲା ପାଟିକରି ଉଠିଲେ ", ଆଃ ! କଇଁଛଟା ତଳେ ପଡ଼ି ଯାଆନ୍ତା କି ବଢ଼ିଆ ଭୋଜିଟାଏ ହୁଅନ୍ତା ! ଏତିକି ଶୁଣି କଇଁଛ ରାଗରେ ତମ ତମ ହୋଇ କହିଲା, " ଆରେ ବୋକା ପିଲାଏ, ପରକୁ ଏପରି କୁହନ୍ତିକି ? କଇଁଛର ନିଜ ବୋକାମୀ ଯୋଗୁଁ ତଳେ ପଡ଼ିଗଲା ଏବଂ ପିଲା ମାନଙ୍କର ବଢ଼ିଆ ଭୋଜିଟିଏ ହୋଇଥିଲା ।

ଏଇ ଗପଟି ସରିଲା
ମୋ ଫୁଲ ଗଛଟି ମରିଲା ।



ବାଲିମେଲା
ବାଳିକା ହାଇସ୍କୁଲ

## ※ ଆମର ଅବଦାନେ ※

※ ଶ୍ରୀ ଭଗୀରଥି ପାଣ୍ଡ

ବର୍ଷାଝଡ଼ରେ ଗ୍ରୀଷ୍ମ ଖରେ
ପଉଷ ଶୀତ ଜାଡ଼େ,
ହାତେ କଡ଼ି ହଳ ଯୁଆଳି
କୃଷୀଟି ମାଟି ତାଡ଼େ ।
ଭରେ ଫସଲ ବରଷ ଶେଷେ
ଖଳରୁ ଆଣି ଭରଇ ଘର
ଖାଏ ଖୁଆଏ ଜଗତ ଜନେ
କେଡ଼େ ତ୍ୟାଗ ତା'ର,
ସେପରି ଆମେ କରିବା କୃଷି
ପରର ଉପକାର

※

ମିସ୍ତ୍ରୀ ବାଳକ ତୋଳଇ ଘର
ତା.ଘର ନଡ଼ା ଗୃହେ,
କରେନି ଦୁଃଖ ହସ ତା ମୁଖ
କାମ ମଜୁରି ଆଳେ ।
ତାପରି ଆମେ ଶ୍ରମର ଦାନେ
ତୋଳିବା ଘର ନୋହୁ କାତର
ସେ ଘରେ ଯେହୁ ରହିଲେ ରହୁ
ବାସ ପାଇବ ଜଣେ,
ବର୍ଷା କାକର କେହୁ ନ ସହୁ
ଆମର ଅବଦାନେ ।

ତନ୍ତ ଯନ୍ତରେ ବୁଣେଇ ତନ୍ତ୍ରୀ
ଦକ୍ଷତାର ହାତ,
ନାନା ଭଙ୍ଗରେ ରଙ୍ଗିନ ସେ ତ
ଆଖିକୁ ଲାଗେ ସ୍ୱତ ।

ଗାଇଣ ଗୀତ ତଦର ବୁଣେ
ଘୁଡ଼ଇ ଶୀତ ଗବାଖ କଣେ
ପରଶ ତାର ଉଷ୍ମ ଲାଗେ
ବସ୍ତ୍ର ଲୁଗା ଆମେ,
ବୁଣିବା ଶିଳ୍ପ ନିଜ କୁଟିରେ
ଲାଗିବ ଲୋକ କାମେ



ତପନ ପରି ଆଲୋକ ଦେବା
ପବନ ପରି ବାୟୁ ଘୁଡ଼ବା
ଧରଣୀ ପରି ସହନ ଶୀଳ
ଜୀବନେ ଯିବା ଶିକ୍ଷି,
ନ ନେବା କା'ର ଅର୍ଜିତ କଷ୍ଟ
ବଳ ବଳପେ ଝିଙ୍କି ।



ଦେବତା ପରି ଦେବାଟି ଖାଲି
ଆପଣା ଶ୍ରମ, ଜ୍ଞାନ,
ଦେଶର ସେବା କରିଲେ ଜାଣ
ଜୀବନ ହେବ ଧନ୍ୟ



ନୂଆଁ ବନ୍ଧି ସାହି,
ନବରଙ୍ଗପୁର
ପିନ୍-୭୬୪୦୫୯

ଆରବ ଦେଶର କାହାଣୀ :—

# କିଏ ବଡ଼ ?

ଶ୍ରୀ ରତ୍ନାକର ଦାଶ

ଆରବ ଦେଶର ବାଗଦାଦ୍ ସହରରେ ଥିବା ଖଲିଫା ରସିଦ ଙ୍କ ଦୁଇପୁଅ ମୌଲବୀ ଫର୍ହାଙ୍କ ନିକଟରେ ପାଠ ପଢ଼ୁଥିଲେ । ଦିନେ ମୌଲବୀଙ୍କର ବାହାରକୁ ଯିବାର ଥିଲା, ସେ ଯିବା ପିନ୍ଧା କରୁଥାନ୍ତି । ଖଲିଫାଙ୍କ ପୁଅ ମାନେ ପାଖରେ ବସିଥା'ନ୍ତି । ସେ ପିଲାମାନଙ୍କୁ କହିଲେ ଆରେ ପିଲେ ମୋ' ଜୋତାଆଣିଲ ଦୁଇଭାଇ ଦଉଡ଼ିଲେ ଜୋତା ଆଣିବାକୁ । ଜୋତା ଆଣିବ କିଏ ? ଏ ନେଇ ଦୁଇ ଭାଇଙ୍କ ମଧ୍ୟରେ ଟଣା ଓଟରା ଚାଲିଲା । ବଡ଼ କହିଲା ମୁଁ ବଡ଼ ମୁଁ ଜୋତା ନେବି ଏହିପରି କିଛି ସମୟ ପରେ ଉଭୟ ପଟେ ପଟେ ଜୋତା ନେଇ ମୌଲବୀ ଫର୍ହାଙ୍କୁ ଦେଲେ ।

ଖଲିଫାଙ୍କ ପୁଅଙ୍କୁ ସାମାନ୍ୟ ଜଣେ ମୌଲବୀ ଜୋତା ଆଣିବାକୁ କହିଲେ ଏହା କମ୍ ସ୍ପର୍ଦ୍ଧାର କଥା ନୁହେଁ । କେତେକ ଖଳ ପ୍ରକୃତି ର ଲୋକେ ଖଲିଫାଙ୍କୁ ଏକଥା ଜଣାଇଲେ । ଖଲିଫା ସବୁ ଶୁଣି ଚୁପ୍ ରହିଲେ । ଚାରିଦିନ ପରେ ମୌଲବୀଙ୍କୁ ଡକାଇ ପଠାଇଲେ । ଖଳ ପ୍ରକୃତିର ଲୋକେ ଖୁସିହୋଇ-ଗଲେ ଯା ହେଉ ମୌଲବୀ ଙ୍କୁ ଜୋତା ବୁହାଇବା ଅଭିଯୋଗ ରେ ପ୍ରାଣଦଣ୍ଡ ମିଳିବ । ମୌଲବୀ ଡର ଡର ଖଲିଫାଙ୍କ ନିକଟ କୁ ଗଲେ । ଖଲିଫା ମୌଲବୀଙ୍କୁ ପଚାରିଲେ ଆପଣଙ୍କୁ ଗୋଟିଏ ପ୍ରଶ୍ନର ଉତ୍ତର ଦେବାକୁ ପଡ଼ିବ ।

ମୌଲବୀ ଏହା ଶୁଣି ବରଡ଼ା ପତ୍ର ପରି ଥରିବାକୁ ଲାଗିଲେ । ଖଲିଫା ଏହା ଦେଖି ହସି ହସି ତାଙ୍କୁ ପିଠି ଥାପୁଡ଼ାଇ କହିଲେ ଡରିବାର କିଛି ନାହିଁ ।

କୁହନ୍ତୁ ଏ ଦୁନିଆଁରେ ବଡ଼ଲୋକ କିଏ ? ଲୋକେ କାହାକୁ ବେଶି ସମ୍ମାନ କରନ୍ତି ? ମୌଲବୀ ଉତ୍ତର ଦେବାକୁ ଯାଉ କହିଲେ ଆପଣତ ଖଲିଫା

ଆପଣ ସମସ୍ତଙ୍କର ନମସ୍ୟ, ଆପଣଙ୍କ ଠାରୁ ବଡ଼ କିଏ ଅଛି । ଖଲିଫା କହିଲେ "ଆପଣତ ସମସ୍ତଙ୍କ ଭଳି ଲୋକଦେଖା କଥା କହିଲେ । ଆପଣଙ୍କ ଠାରୁ ମୁଁ ସଠିକ ଉତ୍ତର ଆଶା କରିଥିଲି । କିନ୍ତୁ ଆପଣ ଉପରେ କହୁନାହାନ୍ତି ଶୁଣନ୍ତୁ ତେବେ, ଦୁନିଆରେ ବଡଲୋକ ହେଉଛନ୍ତି ଆପଣ । ଆପଣମାନଙ୍କ ଭଳି ଶିକ୍ଷକ ହିଁ ପ୍ରକୃତରେ ବଡ ଓ ସମସ୍ତ ସମ୍ମାନର ଅଧିକାରୀ । ଖଲିଫାଙ୍କ ପିଲା ଜୋତା ଉଠାଇ ତାହା ପ୍ରମାଣ କରିଦେଇ ଛନ୍ତି ।

ଜୋତା ଉଠାଇବା ପ୍ରସଙ୍ଗ ଶୁଣି ମୌଲବୀ ଥରିବାକୁ ଲାଗିଲେ । ଖଲିଫାଙ୍କ ପାଖରେ ସେ ନିଜକୁ ବଡ଼ ଦୋଷୀ ବୋଲି ମଣିଲେ । ସେ କାକୁତି ମିନତି ହୋଇ କହିଲେ ଆଜ୍ଞା । ମୋର ଅପରାଧ ହୋଇଛି । ମୋର ଦୋଷ ମାର୍ଜନା କରନ୍ତୁ । ଆଉକେବେ ଏଭଳି ଭୁଲ ମୁଁ କରିବିନାହିଁ । ଏହାଶୁଣି ଖଲିଫା ହସି ହସି କହିଲେ, ଆରେ ଆପଣଙ୍କର ଭୁଲ ହେଲା କେଉଁଠି ? ବରଂ ମୁଁ ଆପଣଙ୍କୁ ମୋ ନିକଟକୁ ଡକାଇ କଷ୍ଟଦେଇଛି । ଆପଣ ମୋ ପିଲା ମାନଙ୍କର ଶିକ୍ଷାଗୁରୁ । ଆପଣ ସେମାନଙ୍କୁ ଉଚିତ ମାର୍ଗରେ ପରିଚାଳିତ କରିବେ । ମୋ ତୁଳନାରେ ପିଲାମାନଙ୍କ ଉପରେ ଆପଣଙ୍କ ଦାୟିତ୍ୱ ଓ ପ୍ରଭାବ ଅଧିକ । ମୋ ପିଲା ହୋଇ ଯେତେବେଳେ ଆପଣଙ୍କ ଜୋତା ସେମାନେ ଉଠାଇଛନ୍ତି, ଏହା ଶୁଣିବାକୁ ପାଇ ମୋର ଆନନ୍ଦର ସୀମା ରହିଲା ନାହିଁ, ଖଲିଫାଙ୍କ ପୁଅ ବୋଲି ସେମାନଙ୍କ ମନରେ ଟିକିଏ ଗର୍ବ ନାହିଁ । ଖାଲି ସେତିକି ନୁହେଁ ସେମାନଙ୍କ ଗୁରୁଭକ୍ତିର ମଧ୍ୟ ପଟାନ୍ତରନାହିଁ । ଆପଣଙ୍କ ଶିକ୍ଷା ସେମାନଙ୍କୁ ଭଲ ମଣିଷ ହେବାକୁ ସାହାଯ୍ୟକରିବ, ଏ ବିଶ୍ୱାସମୋର ଆଜି ଆସିଛି । ଏହା ମୋ ପାଇଁ ଖୁସିର ବିଷୟ । ପ୍ରତି ଯୁଗରେ ପ୍ରତି କାଳରେ ଏହି ପରି ଆଦର୍ଶ ଶିକ୍ଷକ ଦେଶକୁ ଗୋଟିଏ ଗୋଟିଏ ବର ପୁତ୍ର ପ୍ରଦାନ କରିଥାନ୍ତି ।

ଖଲିଫା ସିନା ପୂଜା ପାଇବ ଆପଣା ଦେଶରେ ଶିକ୍ଷକ ପୂଜିତ ହେବେ ସବୁ ଦେଶରେ, ସେ ଶିକ୍ଷା ଦେଇ କେତେ ଯେ ନୂଆ ନାଗରିକ ଗଢିବେ,

କଏ ଇଂଜିନିୟର, ଡାକ୍ତର, ମନ୍ତ୍ରୀ, ଶିକ୍ଷକ, କଳାକାର, ଭିନ୍ନ ଭିନ୍ନ ଅଫିସର ହୋଇ ଗଢ଼ିବ ତାର ପଟାନ୍ତର ନାହିଁ ଆଜିର ଶିଶୁ କାଲିର ସୁନାଗରିକ ହେବେ । ଖଲିଫା ଖାଲି କଥାରେ ମୌଲବୀଙ୍କୁ ପ୍ରଶଂସା କଲେ ନାହିଁ ତାଙ୍କୁ ଉପଯୁକ୍ତ ପୁରସ୍କାର ମଧ୍ୟ ଦେଲେ । ମୌଲବୀଙ୍କ ମନରୁ ଭୟ ଦୂର ହୋଇଗଲା ।

ଚ ଥ କୋ ଣ୍ଡା



ସମୃଦ୍ଧ ସାକ୍ଷର ମାଲକାନଗିରି
ହସି ଫୁଟି ଉଠୁ ଏ ବନଗିରି

# ଧନ୍ଦା

ରଶ୍ମିତା ପାଣିଗ୍ରାହୀ
ସପ୍ତମ ଶ୍ରେଣୀ

ଛଗୋଟି ଅକ୍ଷରେ ଶବ୍ଦଟିଏ
ଗଢି ଦେବ ଆହା ସତରେ କଏ ?
ଛନ ଅକ୍ଷରକୁ ସଜାଇ ଦେଲେ
ମନ ମୋହି ନେବ କ୍ଷଣିକ ଭଲେ ।
ପ୍ରଥମ ଦ୍ୱିତୀୟ ମିଶାଇ ଦେବ
ତାର ସୃଷ୍ଟି କର୍ତ୍ତାକୁ ବୁଝାଇବ,
ପ୍ରଥମ ତୃତୀୟ ଯେବେ ଦେବ ମିଶାଇ
ସେଥିରୁ ଦକ୍ଷତ ବୋଲିବ ଭାଇ
ଦ୍ୱିତୀୟ ପ୍ରଥମ ଅକ୍ଷର ନେଇ
ଆଦେଶ ପାଇବ ଜନନୀ ପାଇଁ
ଶବ୍ଦ ପ୍ରଥମେ ଯିଏ ଲେଖିବ
ଶୀଘ୍ର ପ୍ରାଇଜଟିଏ ସିଏ ପାଇବ



ଏସ ଏ ଭି ସ୍କୁଲ
ମାଲକାନଗିରି

# ଗଛର ମହତ କଥା

❋ କବିତା ଦାସ
ଶିକ୍ଷୟିତ୍ରୀ

ବୁଲୁ, ଟୁଲୁ, ଲୁଲୁ, ଡଙ୍ଗରେଁ ଗଲେ
ଭଇଁଚ କାକୁଡ଼ି ତୋଳି ଖାଇଲେ
ଆହାକି ମିଠା,

କୁହା କୁହି ହୋଇ ଘର ଧାଇଁଲେ ।
କହିଲା ବୁଲୁ, ଜାଣିଛୁ ଟୁଲୁ
ଗଛର ମହତ କଥା,
ଦିଏ ଆମକୁ ସୁଖ ଅଜାଡ଼ି
ମନେ ନ ରଖି ବ୍ୟଥା ।
ଗଛ ତ ଆମକୁ ଦେଉଛି ବର୍ଷା
ଖାଦ୍ୟ, ବାସ, ଲୁଗା ପଟା,
ଆମର ନିଶ୍ୱାସେ ଭରିତ ଦେଉଛି-ଅମ୍ଳଜାନ,
ନ ହେଲେ ହୁଅନ୍ତୁ ଆମେ ପ୍ରସ୍ତ ହଟ ହଟା ।
କହିଲା ଟୁଲୁ, ବୁଲୁ ଭାଇନା
କେତେ କଥା ନ କହିଲୁ
ଗଛର କଥା ଭାବୁନା କେବେ
ଭାବୁନା ତାର ଭଲ ।
ଆଜଠୁ ଆମେ ଯେତେକ ପିଲା
ସବୁ ଏକାଠି ହେବା
ରାସ୍ତା କଡରେ, ଖୋଲା ଜମିରେ
ଗଛକୁ ପୋତି ଯିବା
ଦେବ ସେ ଛାଇ, ମାରିବୁ ହାଇ
ଗଛର ତଳେ ବସି,
ଗଛଟି ଥିଲେ ଆମେ ସବୁରେ
ହୋଇବା କେତେ ଖୁସି ।

ଜୟପୁରିଆ ଗୁଡ଼ା ଜ ପ୍ରା ସ୍କୁଲ, ମାଲକାନାଗିରି ।

# ମହତ ବାଣୀ

୧- ସୁଖରେ ଭଗବାନଙ୍କୁ ସାଥିରେ ରଖ, ଦୁଃଖ କେବେ ଆସିବ ନାହିଁ। କେବେ ଆସିବ ନାହିଁ।

୨- ଆଖି ସବୁ ଦେଖି ପାରେ, କିନ୍ତୁ ନିଜର ଦେଖି ପାରେନା, ସେହିପରି ମଣିଷ ଅନ୍ୟର ଭୁଲ ବାଛେ, କିନ୍ତୁ ନିଜ ଭୁଲକୁ ସ୍ୱୀକାର କରେନା ।

୩- ସ୍ୱର୍ଗ ବୋଲି କିଛି ନାହିଁ, ପୁଣ୍ୟ ହିଁ ସ୍ୱର୍ଗ ।

୪- ଯିଏ କେବଳ ଅନ୍ୟମାନଙ୍କ ପାଇଁ ଜୀବନ ଧାରଣ କରନ୍ତି ସେମାନଙ୍କ ଜୀବନ ମୁକ୍ତ ।

୫- ଧୂର୍ତ୍ତଙ୍କ ଠାରୁ ପ୍ରଶଂସା ଶୁଣିବା ଅପେକ୍ଷା ବିଚାରଶୀଳଙ୍କ ଠାରୁ ଧିକ୍କାର ଶୁଣିବା ଭଲ ।

୬- ଯିଏ ଶତ୍ରୁ ସହିତ ମିତ୍ରଭଳି ବ୍ୟବହାର କରେ ତାହାର କେହି ଶତ୍ରୁ ରହିପାରେ ନାହିଁ ।

୭- ଝଗଡା କରୁଥିବା ଶତ୍ରୁ ଠାରୁ ବିଶ୍ୱାସ ଘାତକ ମିତ୍ର ପ୍ରତି ଅଧିକ ସତର୍କ ରହିବା ଉଚିତ୍ ।

୮- ଯେଉଁ ବ୍ୟକ୍ତି ନିଜ ସ୍ୱାର୍ଥ ଓ ସୁଖ ଛଡା ଆଉ କିଛି ଜାଣେ ନାହିଁ, ସେ ବ୍ୟକ୍ତି ବୃହସ୍ପତିଙ୍କ ଭଳି ବିଜ୍ଞ ହୋଇଥିଲେ ବି ଭଲ ଘରେ ନ ବସିବା ତାକୁ ବିଶ୍ୱାସ କରିବା ଅନୁଚିତ୍ ।

୯- ଆଦୌ କୌଣସି ବିଷୟରେ ଗର୍ବ କରନାହିଁ । ତୁମଧ କାର୍ଯ୍ୟବଳୀ ହିଁ ତୁମ ବିଷୟରେ ସବୁ କିଛି କହିବାକୁ ସମର୍ଥ ।

୧୦- ଦୁଷ୍ଟମାନଙ୍କ ଧନ ବୈଭବ ବଢୁଥିବା ଦେଖି ଲାଳାୟିତ ହୁଅ ନାହିଁ ସେମାନେ ବେଲୁନ୍ ଭଳି ଫୁଲନ୍ତି ଏବଂ ପାଣି ଫୋଟକା ଭଳି ମିଳାଇଯାଆନ୍ତି ।

ମୋନାଲିସା ପ୍ରିୟଦର୍ଶିନୀ ତ୍ରିପାଠୀ
ସପ୍ତମ ଶ୍ରେଣୀ
ଓକେର୍ଲ, ମଧ୍ୟ ଇଂରାଜୀ ବିଦ୍ୟାଳୟ

Govt.RegdNo.34297/80 SISUPRAVA Postal RegdNo.0688

## ଶିଶୁ ପ୍ରଭାର ନିୟମାବଳୀ

✲ ଏହା ଏକ ଦ୍ୱିମାସିକ **ପତ୍ରିକା** ମାସର ପ୍ରଥମ ସପ୍ତାହରେ ପ୍ରକାଶ ପାଏ ।

✲ ଲେଖକ, ଲେଖିକାମାନେ ସୁନ୍ଦର ଅକ୍ଷରରେ କାଗଜର ଗୋଟିଏ ପାର୍ଶ୍ୱରେ ଶିଶୁ ଉପଯୋଗୀ ଗଳ୍ପ, କବିତା, ପ୍ରବନ୍ଧ, ସାଧାରଣ ଜ୍ଞାନ, ବିଜ୍ଞାନ ବାର୍ତ୍ତା ରମ୍ୟ ରଚନା ଇତ୍ୟାଦି ଲେଖା ପଠାଇ ପାରିବେ ।

✲ ଅପ୍ରକାଶିତ ପାଣ୍ଡୁଲିପି ଫେରସ୍ତ କରାଯାଏ ନାହିଁ ।

✲ ଅନ୍ୟୁନ ୨୦ ଖଣ୍ଡରୁ ଅଧିକ କପି ନେଲେ ଶତକଡ଼ା ୨୫ରିହାତି ଦିଆଯାଏ ।

✲ ଏହାର ବାର୍ଷିକ ଚାନ୍ଦା ମାତ୍ର ଟ୧୮-୦୦ (ବିଶେଷାଙ୍କ ୨ଟି ସହ ।)

✲ ବିଜ୍ଞାପନ ନିମନ୍ତେ ପୁରା ପୃଷ୍ଠା ଟ୮୦୦-୦୦, ଅଧାପୃଷ୍ଠା ୫୦୦ଟଙ୍କା ଚଉଠ ପୃଷ୍ଠା ଟ୩୦୦ ଅଟେ ।

✲ ସମସ୍ତ ଚିଠି ପତ୍ର ସମ୍ପାଦକ, ଶିଶୁପ୍ରଭା କାର୍ଯ୍ୟାଳୟ ବାଲକେଲା କମ୍ପା ମାଲକାନଗିରି ଠିକଣାରେ ପଠାଇବେ ।



# ବିଜ୍ଞାପିତ ଅଞ୍ଚଳ ପରିଷଦ, କାଳିମେଳା

## ନବ ବର୍ଷର ହାର୍ଦ୍ଦିକ ଅଭିନନ୍ଦନ ସହ ।

⁂ ପୌର ସମ୍ପତ୍ତି ଆପଣଙ୍କର ଏହାର ରକ୍ଷଣାବେକ୍ଷଣ ଆପଣଙ୍କର କର୍ତ୍ତବ୍ୟ ।

⁂ ଏ ସହର ଆପଣଙ୍କର ଏହାକୁ ପରିଷ୍କାର ପରିଚ୍ଛନ୍ନ ରଖନ୍ତୁ ।

⁂ ରାସ୍ତାକଡ଼ରେ ଯାନବାହନ, ଶଗଡ଼ ଇତ୍ୟାଦି ରଖି ରାସ୍ତା ଅବରୋଧ କରନ୍ତୁ ନାହିଁ, କାରଣ ଅସୁବିଧା ଆପଣ ଭୋଗିବେ ।

⁂ ବିଜ୍ଞାପିତ ଅଞ୍ଚଳର ସମସ୍ତ ଜନ ହିତକର କାର୍ଯ୍ୟରେ ପୌର କର୍ମଚାରୀଙ୍କୁ ସହଯୋଗ କରନ୍ତୁ । ସେମାନେ ଆପଣଙ୍କର ।

⁂ ପୌର ସମୃଦ୍ଧି ପାଇଁ ସମସ୍ତପ୍ରକାର ପୌର ଟିକସ ପଇଠ କରି ନାଗରିକର କର୍ତ୍ତବ୍ୟ ପାଳନ କରନ୍ତୁ । ଆପଣ ଯେଣୁ ସୁନାଗରିକ ।

**ଆମର ସାଫଲ୍ୟ—**

କ) ନୂଆଁଗୁଡ଼ା ଗ୍ରାମକୁ ନୂତନ ରାସ୍ତା ନିର୍ମାଣ ।

ଖ) ଗୋପବନ୍ଧୁ ଛକ ଠାରେ ପାର୍କ ନିର୍ମାଣ ।

ଗ) ଗୋପବନ୍ଧୁ ଛକ ଠାରେ ଯାତ୍ରୀ ବିଶ୍ରାମଗାର ନିର୍ମାଣ ।

ଘ) ସହରର ମୁଖ୍ୟ ସ୍ଥାନ ମାନଙ୍କରେ ସ୍ୱତନ୍ତ୍ରୀଭ ଆଲୋକ ବ୍ୟବସ୍ଥା ।

ଙ) ବାଳିକା ଉଚ୍ଚ ବିଦ୍ୟାଳୟ ନିକଟରେ ସୁଦୃଶ୍ୟ ପୋଖରୀ ନିର୍ମାଣ ।

ଚ) ବାଳିକା ଉଚ୍ଚ ବିଦ୍ୟାଳୟ, ବାଳିମେଳା ମହା ବିଦ୍ୟାଳୟ, ଉନ୍ନୀତ ମଧ୍ୟ ଇଂରାଜୀ ବିଦ୍ୟାଳୟ ଠାରେ ଶ୍ରେଣୀ ଗୃହ ନିର୍ମାଣ ।

ଛ) ପୁରୁଣା ଓକେଲ, ଓ ପି ସି କଲୋନୀ, ନୂଆଁଗୁଡ଼ା ଏବଂ ନୂଆସାହି ଠାରେ ଏନ୍ ଏ ସି ପ୍ରାଥମିକ ବିଦ୍ୟାଳୟ ନିର୍ମାଣ ଓ ପରିଚାଳନା ।

ଜ) ସହରର ମୁଖ୍ୟ ବଜାର ରାସ୍ତା ପିଚୁ ଓ ଚଉଡ଼ା କରି ଯାତାୟତର ସୁବନ୍ଦୋବସ୍ତ ।